# ପୁନର୍ଜୀବନ କାହିଁକି ?

ଲେଖକ
**ଶକୀଲ୍ ଅହମଦ**




RESEARCH ACADEMY ଇକ୍‌ରା ରିସର୍ଚ୍ଚ ଏକାଡ଼େମୀ

# ପୁନର୍ଜୀବନ କାହିଁକି ?

ଲେଖକ :
ଶକୀଲ୍ ଅହମଦ



ପ୍ରକାଶକ :
ଇକ୍ରା ରିସର୍ଚ୍ଚ ଏକାଡ଼େମୀ
ମେଟ୍ରୋ ମଂଜିଲ୍, ଦିୱାନ୍ ବଜାର,
କଟକ - ୭୫୩ ୦୦୧

ନୂତନ ସଂସ୍କରଣ : ୨୦୧୦

ଅକ୍ଷର ସଜ୍ଜା :
ସାହୁ କମ୍ପ୍ୟୁଟର୍ ୟୁନିଟ୍, କଟକ

ମୁଦ୍ରଣ :
ଜୁନୁପ୍ ଗ୍ରାଫିକ୍ସ, କଟକ

ମୂଲ୍ୟ : ଟ.୩୦.୦୦ ମାତ୍ର

# PUNARJIBANA KAHINKI ?

**Author :**
Shakeel Ahmed



**Publisher :**
**IQRA RESEARCH ACADEMY**
Metro Manzil, Dewan Bazar,
Cuttack - 753 001

**New Edition : 2010**

**Type Set :**
Sahoo Computer Unit, Cuttack

**Printer :**
Junup Graphics, Cuttack

**Price : Rs.30.00 only**

ଅନନ୍ତ ଦୟାବାନ୍, ଅତୀବ କରୁଣାଶୀଳ ଅଲ୍ଲାହ୍‌ଙ୍କ ନାମରେ

# ମୁଖବନ୍ଧ

ସାମ୍ପ୍ରଦାୟିକ ସଦ୍‌ଭାବର ଉନ୍ନତି ପାଇଁ ପ୍ରୟାସ କରିବା ସହିତ ଇସ୍‌ଲାମର ପ୍ରକୃତ ଆଭିମୁଖ୍ୟକୁ ସ୍ପଷ୍ଟ କରିବା ମୋ ଲେଖାର ଉଦ୍ଦେଶ୍ୟ । ଏହି ପୁସ୍ତକଟିର ବିଷୟବସ୍ତୁ ମଧ୍ୟ ଧର୍ମର ଏକ ମାନବବାଦୀ ବିଚାରଧାରା ଉପରେ ଆଧାରିତ ।

ପୁନର୍ଜୀବନ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ୍ ଓ ୟହୁଦୀ ଧର୍ମାବଲମ୍ବୀମାନଙ୍କ ମଧ୍ୟରେ ରହିଥିବା ଏକ ସମଭାବାପନ୍ନ ଚିନ୍ତାଧାରା । ଏହା ଇସ୍‌ଲାମର ଏକ ମୌଳିକ ଶିକ୍ଷା ଏବଂ ବେଦ ଓ ବାଇବଲ୍ ସମ୍ମତ ଏକ ସିଦ୍ଧାନ୍ତ । ଯଦିଓ ପୁନର୍ଜୀବନର ସ୍ୱରୂପ ସମ୍ପର୍କରେ କିଛିଟା ମତଭେଦ ରହିଛି, ତଥାପି କର୍ମଫଳ ଯେ ଏହାର ଉଦ୍ଦେଶ୍ୟ—ଏ ବିଷୟରେ ଈଶ୍ୱରବାଦୀମାନଙ୍କ ମଧ୍ୟରେ ମତଭେଦ ନାହିଁ । ପୁନର୍ଜୀବନ, ପରଲୋକ, ସ୍ୱର୍ଗ ଓ ନର୍କ—ସମସ୍ତ ଈଶ୍ୱରବିଶ୍ୱାସୀମାନଙ୍କ ନିକଟରେ ଏକ ସତ୍ୟ ରୂପେ ଗୃହୀତ ଏବଂ ମନୁଷ୍ୟ ଯେ ନିଜ କର୍ମ ପାଇଁ ଈଶ୍ୱରଙ୍କ ନିକଟରେ ଉତ୍ତରଦାୟୀ, ଏହାକୁ କୌଣସି ଧର୍ମମତ ଅସ୍ୱୀକାର କରେନାହିଁ ।

ଏହି ପୁସ୍ତକଟିରେ ମୁଁ ଇସ୍‌ଲାମରେ ଥିବା ପୁନର୍ଜୀବନର ସିଦ୍ଧାନ୍ତର ତର୍ଜମା କରିବା ସହ ଏହାର ଆବଶ୍ୟକତା ଓ ଉପକାରୀତା ବିଷୟରେ ଆଲୋଚନା କରିଛି । ମନୁଷ୍ୟକୁ କିପରି ସଂସାରର ଶ୍ରେଷ୍ଠତମ ପ୍ରାଣୀ ରୂପେ ସୃଷ୍ଟି କରାଯାଇଛି, ତା' ସୃଷ୍ଟିର ଉଦ୍ଦେଶ୍ୟ କ'ଣ, ନିଜ କର୍ମ ପାଇଁ ସେ କାହିଁକି ଉତ୍ତରଦାୟୀ ଏବଂ ଏହି ଉତ୍ତରଦାୟିତ୍ୱବୋଧ ମନୁଷ୍ୟ ଜୀବନକୁ କିଭଳି ଭାବେ ପ୍ରଭାବିତ କରିଥାଏ, ଏହା ମଧ୍ୟ ଆଲୋଚନା କରିଛି ।

ନାସ୍ତିକବାଦ ଦ୍ୱାରା ଶୃଙ୍ଖଳା ଆସେ ନାହିଁ; କିମ୍ବା ଦୁର୍ବଳ ପରଲୋକବାଦର ବିଶ୍ୱାସ ମଧ୍ୟ ମଣିଷର କର୍ମକୁ ନିୟନ୍ତ୍ରିତ କରିବାରେ ସମର୍ଥ ହୁଏନାହିଁ । ଉତ୍ତରଦାୟିତ୍ୱବୋଧର ସତ୍ୟକୁ ଉପଲବ୍ଧି କରିପାରିଲେ ମନୁଷ୍ୟ ଜୀବନ ଶୁଦ୍ଧ ଓ ଶୃଙ୍ଖଳିତ ହେବ ଏବଂ ସମାଜରେ ସୁଖ ଶାନ୍ତି ଆସିପାରିବ ।

ବନ୍ଧୁ ରଫି ଅହମଦ୍ ବିଷୟବସ୍ତୁର ବିଭିନ୍ନ ଦିଗ ଉପରେ ବିଶ୍ଳେଷଣ କରିବାରେ ମୋତେ ସାହାଯ୍ୟ କରିଥିବାରୁ ମୁଁ ତାଙ୍କୁ ଆନ୍ତରିକ ଧନ୍ୟବାଦ ଦେଉଛି ।

ଆଶା କରେ, ପୁସ୍ତକଟି ମୁସଲମାନ୍‌ମାନଙ୍କୁ ପୁନର୍ଜୀବନର ସତ୍ୟକୁ ହୃଦୟଙ୍ଗମ କରାଇବା ସଙ୍ଗେ ସଙ୍ଗେ ଅନ୍ୟ ଧର୍ମାବଲମ୍ବୀ ଭାଇଭଉଣୀଙ୍କୁ ମଧ୍ୟ ନିଜର ଉତ୍ତରଦାୟିତ୍ୱ ସମ୍ପର୍କରେ ସଚେତନ କରିବାରେ ସାହାଯ୍ୟ କରିପାରିବ ।

(ଶକୀଲ ଅହମଦ)
**Cell No.-9861269764**

କଟକ
୨୭ ଡିସେମ୍ବର, ୨୦୦୯

ପାଠକ-ପାଠିକାମାନଙ୍କୁ ବିନମ୍ର ଅନୁରୋଧ,
ସେମାନେ ମହାନ୍ ଗ୍ରନ୍ଥମାନଙ୍କର
ପବିତ୍ରତା ରକ୍ଷା କରିବେ ।

-ଲେଖକ-

# ସୂଚୀପତ୍ର





# ମୃତ୍ୟୁ ଅଟଳ ସତ୍ୟ

ଆଉ କିଛି ସମୟ ପରେ ଆମେ ଏ ମରସଂସାରରୁ ବିଦାୟ ନେବା । ଯେଉଁ ସଂସାର ଚିନ୍ତା ଆମକୁ ଦିନରାତି ଲାଗି ରହିଛି, ଯାହାକୁ ସଜାଡ଼ିବାରେ ଓ ସାଉଁଟିବାରେ ଆମେ ସଦାବେଳେ ବ୍ୟସ୍ତ, ସେ ସଂସାରରେ ଆମେ ସବୁଦିନ ପାଇଁ ରହିପାରିବା ନାହିଁ । ଆମକୁ ଆମ ଘରେ, ପ୍ରିୟଜନଙ୍କ ମେଳରେ ବା ଧନସମ୍ପତ୍ତି କୋଳରେ ବେଶୀଦିନ ରହିବାକୁ ଦିଆଯିବ ନାହିଁ, ଯେମିତି ଆମ ପୂର୍ବଜମାନଙ୍କୁ ରହିବାକୁ ଦିଆଗଲା ନାହିଁ । ସେମାନଙ୍କ ମଧ୍ୟରେ ଅନେକ ଥିଲେ ଯେଉଁମାନଙ୍କର ଧନ-ସମ୍ପତ୍ତି, କୋଠା-ବାଡ଼ି, ବଳ-ପରାକ୍ରମ, ଜ୍ଞାନ-ଗାରିମା ଓ ପ୍ରତିଷ୍ଠା-ପ୍ରତିପତ୍ତି ଆମଠାରୁ ଯଥେଷ୍ଟ ଅଧିକ ଥିଲା । କିନ୍ତୁ ଆଜି ସେମାନଙ୍କର ଚିହ୍ନ ବର୍ଣ୍ଣ ମଧ୍ୟ ନାହିଁ । ମାଟିରେ ମିଶିଗଲେ ମାଟିର ମଣିଷମାନେ ।

ମୃତ୍ୟୁ କେବେ ଆସିବ ଏବଂ କେଉଁ ରୂପରେ ଆସିବ ତାହା କେହି ଜାଣନ୍ତି ନାହିଁ । ଯେମିତି ଆମେ ହଠାତ୍ ଅସୁସ୍ଥ ହୋଇପଡୁ ଏବଂ ବୁଝିପାରୁନା ଯେ ହଠାତ୍ କିପରି ଦେହ ଖରାପ ହୋଇଗଲା, ସେହିପରି ଦିନେ ହଠାତ୍ ମରିଯିବା ଏବଂ ଜାଣିପାରିବା ନାହିଁ ଯେ କିପରି ମୃତ୍ୟୁ ଆସିଗଲା । ଧନୀ ହେଉ ବା ଗରିବ, ରାଜା ହେଉ ବା ରଙ୍କ, ମୃତ୍ୟୁମୁଖରୁ କେହି ବଞ୍ଚିପାରିବ ନାହିଁ । ପ୍ରତ୍ୟେକ ଜୀବ ମୃତ୍ୟୁର ସ୍ୱାଦ ନିଶ୍ଚୟ ଚାଖିବ । ଏହି ସତ୍ୟକୁ ଘୋଷଣା କରି ପବିତ୍ର କୁର୍‌ଆନ କହେ :

> ''ପ୍ରତ୍ୟେକ ଜୀବ ମୃତ୍ୟୁର ସ୍ୱାଦ ଆସ୍ୱାଦନ କରିବ, ଆଉ ଆମ୍ଭେ ତୁମମାନଙ୍କୁ ଭଲ ଓ ମନ୍ଦ ପରିସ୍ଥିତି ମାଧ୍ୟମରେ ପରୀକ୍ଷା କରୁ; ଅବଶେଷରେ ତୁମ୍ଭମାନଙ୍କୁ ଆମ୍ଭ ନିକଟକୁ ଫେରିବାକୁ ହେବ ।''
>
> କୁର୍‌ଆନ ୨୧:୩୫

ମୃତ୍ୟୁ ଏପରି ଏକ ଅଟଳ ସତ୍ୟ ଯେଉଁଥିରେ କୌଣସି ମତଭେଦ ନାହିଁ । ପ୍ରତ୍ୟେକ ଧର୍ମମତ ଏହି ସତ୍ୟକୁ ସ୍ୱୀକାର କରେ । କିନ୍ତୁ ମୃତ୍ୟୁ ପରେ କ'ଣ

ହେବ, ଏ ବିଷୟରେ ବିଭିନ୍ନ ମତବାଦ ରହିଛି । କେହି କହେ—''ମଣିଷ ମଲା-ଗଲା, ଆଉ ଜୀବିତ ହେବା ସମ୍ଭବ ନୁହେଁ । ତେଣୁ, ଯେତେଦିନ ଏ ଜୀବନ ଅଛି, ମଜା କର ।'' କେହି କହେ—''ମୃତ୍ୟୁ ପରେ ମଣିଷ ପୁନର୍ଜୀବିତ ହେବ ଏବଂ ନିଜର କର୍ମଫଳ ଭୋଗ କରିବ ।'' ଆଉ କେହି କହେ—''କର୍ମ ଅନୁସାରେ ମନୁଷ୍ୟ ସଂସାରରେ ବିଭିନ୍ନ ଶରୀର ଧାରଣ କରି ଜନ୍ମ ହେଉଥିବ ଏବଂ ଏହି ପୁନର୍ଜନ୍ମ ପ୍ରକ୍ରିୟା ତା' ମୋକ୍ଷ ପର୍ଯ୍ୟନ୍ତ ଚାଲିଥିବ ।'' ଏହିପ୍ରକାର ବିଭିନ୍ନ ମତବାଦ ରହିଛି । ଇସ୍‌ଲାମ ଶିକ୍ଷା ଦିଏ ଯେ, ପ୍ରତ୍ୟେକ ମଣିଷ ତା' କର୍ମ ପାଇଁ ଈଶ୍ୱରଙ୍କ ନିକଟରେ ଉତ୍ତରଦାୟୀ ଏବଂ ତାକୁ ତା'ର ପ୍ରତ୍ୟେକ କର୍ମର ପୁଙ୍ଖାନୁପୁଙ୍ଖ ହିସାବ ଦେବାକୁ ହେବ, ଯେଉଁଥିପାଇଁ ମୃତ୍ୟୁ ପରେ ତାକୁ ପୁନର୍ଜୀବିତ କରାଯିବ ।

ମୃତ୍ୟୁ ପରେ ଜୀବନ ଏବଂ ଏହାର କାରଣ ସମ୍ପର୍କରେ ଆଲୋଚନା କରିବା ପୂର୍ବରୁ ଆମେ ମାନବ ମହାତ୍ମ୍ୟ ଏବଂ ମାନବ ଜନ୍ମର ଉଦ୍ଦେଶ୍ୟ କ'ଣ ଏହା ଜାଣିବା ଉଚିତ । ଏହାଦ୍ୱାରା ପୁନର୍ଜୀବନ ଓ ଏହାର ଆବଶ୍ୟକତାକୁ ବୁଝିବା ସହଜ ହେବ ।

□□□

# ସୃଷ୍ଟିର ଶ୍ରେଷ୍ଠତମ ଜୀବ ମନୁଷ୍ୟ

ମନୁଷ୍ୟ ଏକ ସାଧାରଣ ପ୍ରାଣୀ ନୁହେଁ । ସୃଷ୍ଟିର ଅଗଣିତ ଜୀବମାନଙ୍କ ମଧ୍ୟରେ ସେ ଶ୍ରେଷ୍ଠତମ । ଜୀବନର ଅନେକ କ୍ଷେତ୍ରରେ ତାକୁ ଅନ୍ୟ ପ୍ରାଣୀମାନଙ୍କ ତୁଳନାରେ ଶ୍ରେଷ୍ଠତା ପ୍ରଦାନ କରାଯାଇଛି ।

**ଖାଦ୍ୟପେୟରେ ସ୍ୱତନ୍ତ୍ରତା :**

ମନୁଷ୍ୟ ବ୍ୟତୀତ ଅନ୍ୟ ଜୀବଜଗତର ଗୋଟିଏ ନିର୍ଦ୍ଦିଷ୍ଟ ଧରଣର ଆହାର ଥାଏ, ଯଥା—ସିଂହର ଆହାର ମାଂସ । ସେ ଫଳମୂଳ ବା ଘାସପତ୍ର ଖାଇପାରିବ ନାହିଁ । ଛେଳି ଘାସ ଖାଏ । ମାଂସ ତା'ର ଆହାର ନୁହେଁ । ଶୁଆ, ପାରା ଆଦି ପକ୍ଷୀ ଦାନା-ଜାତୀୟ ଖାଦ୍ୟ ଖାଆନ୍ତି । ପ୍ରତ୍ୟେକଙ୍କର ଖାଇବା ଓ ହଜମ କରିବାର ସାମର୍ଥ୍ୟ ମଧ୍ୟ ଭିନ୍ନ ଭିନ୍ନ । କିନ୍ତୁ ମନୁଷ୍ୟର ସ୍ୱାତନ୍ତ୍ର୍ୟ ରହିଛି । ସେ ସବୁଜାତୀୟ ଖାଦ୍ୟ ଖାଇପାରିବ । ସେ ପନିପରିବା, ଶାଗସବଜୀ, ଡାଲି-ଚାଉଳ, ମାଛ-ମାଂସ, ଫଳ-ଫୁଲ ଆଦି ସବୁପ୍ରକାର ଖାଦ୍ୟ ଖାଇପାରିବ ଏବଂ ସେଗୁଡ଼ିକୁ ଅତି ସହଜରେ ହଜମ ମଧ୍ୟ କରିପାରିବ । ତା' ପାଟି, ଦାନ୍ତ, ପାକସ୍ଥଳୀ ଇତ୍ୟାଦି ସେଇ ଅନୁସାରେ ଗଢ଼ା ଯାଇଛି । ତେଣୁ ଖାଦ୍ୟ କ୍ଷେତ୍ରରେ ମନୁଷ୍ୟକୁ ଅନ୍ୟ ପ୍ରାଣୀମାନଙ୍କ ଅପେକ୍ଷା ଶ୍ରେଷ୍ଠତା ପ୍ରଦାନ କରାଗଲା ।

**ପୋଷାକପରିଚ୍ଛଦରେ ସ୍ୱତନ୍ତ୍ରତା :**

ପୋଷାକ କ୍ଷେତ୍ରରେ ମଧ୍ୟ କେବଳ ମନୁଷ୍ୟକୁ ସ୍ୱତନ୍ତ୍ରତା ପ୍ରଦାନ କରାଯାଇଛି । ଅନ୍ୟ ପ୍ରାଣୀମାନଙ୍କର ବସ୍ତ୍ର ପ୍ରକୃତିଦତ୍ତ । ପଶୁପକ୍ଷୀମାନଙ୍କ ଚମଡ଼ା ବା ପର ହିଁ ସେମାନଙ୍କୁ ଖରା, ବର୍ଷା ଓ ଶୀତରୁ ରକ୍ଷା କରେ । ତାହାହିଁ ସେମାନଙ୍କର ଏକମାତ୍ର ବସ୍ତ୍ର । କିନ୍ତୁ ମନୁଷ୍ୟ ପ୍ରତି ଈଶ୍ୱରଙ୍କ ସ୍ୱତନ୍ତ୍ର କୃପା ରହିଛି । ବିଭିନ୍ନ ପ୍ରକାର ବସ୍ତ୍ରର ଭଣ୍ଡାର କେବଳ ତା'ରି ପାଇଁ । ସେ ସୂତା, ରେଶମ, ଚମଡ଼ା, ପ୍ଲାଷ୍ଟିକ ଓ ଧାତୁ ନିର୍ମିତ ବସ୍ତ୍ର ମଧ୍ୟ ବ୍ୟବହାର କରିପାରେ ଏବଂ ନିଜ ପସନ୍ଦ ଅନୁଯାୟୀ ବିଭିନ୍ନ ରଙ୍ଗ ଓ ଡିଜାଇନ୍‌ର ପୋଷାକ ପିନ୍ଧିପାରେ । ଏହି ସ୍ୱତନ୍ତ୍ରତା ଅନ୍ୟ ପ୍ରାଣୀମାନଙ୍କର ନାହିଁ ।

**ଭାଷାରେ ସ୍ୱତନ୍ତ୍ରତା :**

ମନୁଷ୍ୟ ବ୍ୟତୀତ ଅନ୍ୟ ପ୍ରାଣୀଜଗତ କେବଳ ଗୋଟିଏ ଭାଷାରେ ନିଜ ଭାବର ଆଦାନପ୍ରଦାନ କରିପାରନ୍ତି, ଯଥା—କାଉ କେବଳ କା' କା' କରେ, ବିଲେଇ ମ୍ୟାଉଁ ମ୍ୟାଉଁ କରେ କିମ୍ବା ଛେଳି ମେଁ ମେଁ କରେ । ପୃଥିବୀର ଯେକୌଣସି ସ୍ଥାନର ଜୀବଜନ୍ତୁ ହୁଅନ୍ତୁ, ସେମାନେ ଗୋଟିଏ ପ୍ରକାରର ଭାଷା ବ୍ୟବହାର କରନ୍ତି । କିନ୍ତୁ ମନୁଷ୍ୟକୁ ବିଭିନ୍ନ ଭାଷାର ସାମର୍ଥ୍ୟ ଦିଆଯାଇଛି । ସେ ଓଡ଼ିଆ, ହିନ୍ଦି, ଇଂରାଜୀ, ଉର୍ଦ୍ଦୁ, ଆରବୀ, ଜାପାନୀ, ଚାଇନିଜ୍, ରସିୟାନ—ଯେକୌଣସି ଭାଷା ବ୍ୟବହାର କରି ନିଜର ଭାବ ପ୍ରକାଶ କରିପାରେ ।

**ଗମନାଗମନରେ ସ୍ୱତନ୍ତ୍ରତା :**

ସେହିପରି ଅନ୍ୟ ଜୀବଜନ୍ତୁଙ୍କୁ ଯାନବାହାନର ସୁବିଧା ଉପଭୋଗ କରିବାକୁ ଦିଆଯାଇ ନାହିଁ । ବାଘ, ହାତୀ, ଘୋଡ଼ା ନିଜ ଗୋଡ଼ରେ ଚାଲି ଚାଲି ଗନ୍ତବ୍ୟ ସ୍ଥଳକୁ ଯିବେ, ମାଛ ପହଁରି ପହଁରି ଯିବ, ପକ୍ଷୀ ଉଡ଼ି ଉଡ଼ି ଯିବ କିମ୍ବା ସାପ ଗୁରୁଣ୍ଡି ଗୁରୁଣ୍ଡି ଯିବ । କିନ୍ତୁ ମନୁଷ୍ୟ ବିଭିନ୍ନ ପ୍ରକାରର ଯାନବାହନ ଉପଭୋଗ କରିପାରେ । ସେ ଘୋଡ଼ା, ହାତୀଠାରୁ ଆରମ୍ଭ କରି ସାଇକଲ୍, ବସ୍, ଟ୍ରେନ୍, ଜାହାଜ ଓ ବିମାନ ଆଦିକୁ ବାହନ ରୂପେ ବ୍ୟବହାର କରିପାରେ ଏବଂ ଜଳ, ସ୍ଥଳ ଓ ଆକାଶ ମାର୍ଗରେ ମଧ୍ୟ ଯାତ୍ରା କରିପାରେ ।

**ସୃଜନଶକ୍ତି ଓ ବୌଦ୍ଧିକ ବିକାଶ :**

ନିଜ ଚିନ୍ତାଶକ୍ତିର ବିକାଶ କରି ନୂଆ ନୂଆ ଜ୍ଞାନକୌଶଳ ଉଦ୍ଭାବନ କରିବାର ସାମର୍ଥ୍ୟ ମଧ୍ୟ କେବଳ ମଣିଷକୁ ହିଁ ଦିଆଯାଇଛି । ଅନ୍ୟ ପ୍ରାଣୀ ଏହା କରିପାରନ୍ତି ନାହିଁ । ତା'ର ସୃଜନଶକ୍ତି ଅଛି । ସେ କବି, ଲେଖକ, ଗାଳ୍ପିକ ବା ଦାର୍ଶନିକ ହୋଇପାରେ । ନିଷ୍ଠା ଓ ଅଧ୍ୟବସାୟ ବଳରେ ସେ ଯେକୌଣସି କ୍ଷେତ୍ରରେ ପାରଦର୍ଶିତା ହାସଲ କରିପାରେ, ଯଥା—ଜଣେ ଦକ୍ଷ ଡାକ୍ତର, ଇଞ୍ଜିନିୟର ବା ବୈଜ୍ଞାନିକ ମଧ୍ୟ ହୋଇପାରେ ।

ସଭ୍ୟତାର ବିକାଶ ସହିତ ମଣିଷର ଜୀବନଯାପନ ପ୍ରଣାଳୀରେ ମଧ୍ୟ କ୍ରମାଗତ ଉନ୍ନତି ହୋଇଚାଲିଛି । ନୂଆ ନୂଆ ଡିଜାଇନ୍‌ର ଘର କରିବା, ବିଭିନ୍ନ ପ୍ରକାର ଯାନବାହନ ତିଆରି କରିବା ଏବଂ ଟିଭି, ଫୋନ୍. କମ୍ପ୍ୟୁଟର୍, ଇଣ୍ଟର୍‌ନେଟ୍, ଆଦି ଅତ୍ୟାଧୁନିକ ଯନ୍ତ୍ରପାତି ଓ ଜ୍ଞାନକୌଶଳର ଉଦ୍ଭାବନ କେବଳ

ଶ୍ରେଷ୍ଠପ୍ରାଣୀ ମଣିଷ ଦ୍ୱାରା ହିଁ ସମ୍ଭବ । ଅନ୍ୟ ପ୍ରାଣୀମାନଙ୍କର ବୌଦ୍ଧିକ ବିକାଶ ହୁଏନାହିଁ କିମ୍ବା ସେମାନଙ୍କର ସୃଜନଶକ୍ତି ନାହିଁ । ସୃଷ୍ଟିର ପ୍ରାରମ୍ଭରୁ ଆଜିପର୍ଯ୍ୟନ୍ତ ପଶୁପକ୍ଷୀମାନଙ୍କ ଜୀବନଯାପନ ଶୈଳୀରେ ତିଳେମାତ୍ର ପରିବର୍ତ୍ତନ ହୋଇନାହିଁ । ଚଢ଼େଇ ହଜାର ହଜାର ବର୍ଷ ପୂର୍ବେ ଯେମିତି ଘର ତିଆରି କରୁଥିଲା, ଆଜି ମଧ୍ୟ ସେମିତି କରୁଛି, ବାଘ ଭାଲୁଙ୍କର ଶିକାର ଶୈଳୀରେ କୌଣସି ପରିବର୍ତ୍ତନ ହୋଇନାହିଁ ବା ମହୁମାଛିର ବସାବାନ୍ଧିବା କଳା ବଦଳି ନାହିଁ ।

**ବିବେକ ଓ ବିଚାରଶକ୍ତି :**

ଏହା ବ୍ୟତୀତ ମଣିଷର ଏକ ମୁଖ୍ୟ ବିଶେଷତ୍ୱ ହେଉଛି ଯେ, ତାକୁ ବୁଦ୍ଧି, ବିବେକ ଓ ବିଚାରଶକ୍ତି ଦିଆଯାଇଛି, ଯାହାଦ୍ୱାରା ସେ ଉଚିତ-ଅନୁଚିତ ଓ ନ୍ୟାୟ-ଅନ୍ୟାୟ ମଧ୍ୟରେ ପ୍ରଭେଦ କରିପାରେ । ଜଣେ ବ୍ୟକ୍ତି ପଛେ ବିଦ୍ୟାଳୟ ଦ୍ୱାର ମାଡ଼ିନଥାଉ, ସେ ସତ୍-ଅସତ୍, ନୀତି-ଅନୀତି ମଧ୍ୟରେ ଫରକ୍ କରିପାରେ । ସାଧୁତା, ସତ୍ୟବାଦୀତା, ଦୟାପରାୟଣତା, ଦାନଶୀଳତା, ପରୋପକାରୀତା ଆଦି ସଦାଚାରଗୁଡ଼ିକୁ ସେ ଉଚିତ ବୋଲି ହିଁ କହିବ ଏବଂ ମିଥ୍ୟା, କପଟ, ଭଣ୍ଡାମି, କାର୍ପଣ୍ୟ ଓ ପରଅମଙ୍ଗଳ ଆଦି କୁକର୍ମଗୁଡ଼ିକ ଅନୁଚିତ ବୋଲି ସ୍ୱୀକାର କରିବ । ଅନ୍ୟ ପ୍ରାଣୀମାନଙ୍କର ଏହି ବୈଶିଷ୍ଟ୍ୟ ନାହିଁ ।

**ଆତ୍ମସଂଯମ ଶକ୍ତି :**

ଆତ୍ମସଂଯମ ଶକ୍ତି ମଧ୍ୟ କେବଳ ମନୁଷ୍ୟକୁ ଦିଆଯାଇଛି । ଅନ୍ୟ ପ୍ରାଣୀମାନେ ନିଜ ଇନ୍ଦ୍ରିୟର ନିର୍ଦ୍ଦେଶ ପାଳନ କରନ୍ତି; କିନ୍ତୁ ମନୁଷ୍ୟ ଇନ୍ଦ୍ରିୟର ବିରୋଧ କରିପାରେ ଏବଂ ଏହାକୁ ନିଜ ଇଚ୍ଛା ଅନୁସାରେ ନିୟନ୍ତ୍ରଣ ମଧ୍ୟ କରିପାରେ । କୌଣସି କୁକର୍ମ କରିବାର ପ୍ରବଳ ଇଚ୍ଛା ଓ ସୁଯୋଗ ଥିଲେ ସୁଦ୍ଧା ଅଦୃଶ୍ୟ ଈଶ୍ୱରଙ୍କ ଭୟରେ ସେ ଆତ୍ମସଂଯମ କରିପାରେ । ଏହି ଶକ୍ତି ଅନ୍ୟ ପ୍ରାଣୀମାନଙ୍କର ନାହିଁ ।

ଏହିପରି ଅନେକ କ୍ଷେତ୍ରରେ ମନୁଷ୍ୟ ଅନ୍ୟ ପ୍ରାଣୀମାନଙ୍କ ତୁଳନାରେ ଶ୍ରେଷ୍ଠତର ।

ଉପରୋକ୍ତ ଆଲୋଚନାରୁ ପ୍ରମାଣିତ ହୁଏ ଯେ, ମନୁଷ୍ୟ ଅନ୍ୟ ପ୍ରାଣୀମାନଙ୍କ ଭଳି ଏକ ସାଧାରଣ ପ୍ରାଣୀ ନୁହେଁ, ବରଂ ସେ ସ୍ରଷ୍ଟାଙ୍କର ଶ୍ରେଷ୍ଠତମ ସୃଷ୍ଟି ।

□□□

# ଜୀବନର ଉଦ୍ଦେଶ୍ୟ

ପ୍ରଶ୍ନ ହେଉଛି ଯେ, ସଂସାରର ଅଗଣିତ ପ୍ରାଣୀମାନଙ୍କ ମଧ୍ୟରେ ଶ୍ରେଷ୍ଠ କରି ଈଶ୍ୱର ମଣିଷକୁ କାହିଁକି ସୃଷ୍ଟି କରିଛନ୍ତି ? ପ୍ରତିଦିନ ଲକ୍ଷ ଲକ୍ଷ ଲୋକ ଜନ୍ମ ହୁଅନ୍ତି, କିଛି କାଳ ସେମାନଙ୍କୁ ଏଠି ଜୀବିତ ରଖାଯାଏ ଏବଂ ତା'ପରେ ପୁଣି ଫେରାଇ ନିଆଯାଏ । ସୃଷ୍ଟିର ଆରମ୍ଭରୁ ଏହି ଯିବା-ଆସିବା ପ୍ରକ୍ରିୟା ଅନବରତ ଲାଗି ରହିଛି । ମନରେ ପ୍ରଶ୍ନ ଉଠେ ଯେ, କେଉଁଥିପାଇଁ ମଣିଷ ସଂସାରକୁ ଆସେ ? ତା' ଜୀବନର ଉଦ୍ଦେଶ୍ୟ କ'ଣ ?

କ'ଣ ମଣିଷକୁ ବିନା କୌଣସି ଉଦ୍ଦେଶ୍ୟରେ ସୃଷ୍ଟି କରାଯାଇଛି ? ସଂସାରର ସର୍ବଶ୍ରେଷ୍ଠ ସୃଷ୍ଟି, ଆଉ ଉଦ୍ଦେଶ୍ୟ 'କିଛି ନାହିଁ' ? ଏହା ଏକ ଅଯୌକ୍ତିକ କଥା । ଯେଉଁ ମଣିଷର ଆଖି, କାନ, ହାତ, ଗୋଡ଼ ନିରର୍ଥକ ନୁହେଁ, ଯାହା ଶରୀରର କୌଣସି କେଶ ମଧ୍ୟ ଅକାରଣରେ ଗଢ଼ାଯାଇ ନାହିଁ, ସେ ସମ୍ପୂର୍ଣ୍ଣ ମନୁଷ୍ୟଟି କ'ଣ ବିନା କାରଣରେ ଗଢ଼ାଯାଇଛି ? ଆଦୌ ନୁହେଁ; କିନ୍ତୁ ଅନେକ ଲୋକ ଜୀବନର ଲକ୍ଷ ବିଷୟରେ ଜାଣନ୍ତି ନାହିଁ । ଏ ବିଷୟରେ ଚନ୍ତା କରିବାକୁ ସେମାନଙ୍କ ନିକଟରେ ସମୟ ମଧ୍ୟ ନଥାଏ । ସେମାନଙ୍କ ବ୍ୟସ୍ତବହୁଳ ଜୀବନ ଏକ ଲକ୍ଷହୀନ ନୌକା ପରି ସଂସାର ସାଗରରେ ଭାସୁ ଥାଏ ।

ଟଙ୍କା ରୋଜଗାର କରିବା, କିଛି ଧନ-ସମ୍ପତ୍ତି ଠୁଳ କରିବା, ଘରଦ୍ୱାର କରି ବାହାସାହା ହେବା ଏବଂ ନିଜ ସନ୍ତାନଙ୍କୁ ମଧ୍ୟ ସେଇ ଉଦ୍ଦେଶ୍ୟ ପୂରଣ ପାଇଁ ପ୍ରସ୍ତୁତ କରିବା ଛଡ଼ା ଅଧିକାଂଶଙ୍କ ଜୀବନର ଅନ୍ୟ କୌଣସି ଲକ୍ଷ ନ ଥାଏ । ଖୁବ୍ ବେଶୀ ହେଲେ କିଛିଟା ଯଶ-ଖ୍ୟାତି ବା ମାନ-ସମ୍ମାନ ପାଇଗଲେ ଜୀବନଟା ସାର୍ଥକ ହୋଇଗଲା ବୋଲି ସେମାନେ ମନେ କରନ୍ତି । ବୋଧହୁଏ ସେମାନଙ୍କର ଧାରଣା ଯେ ଈଶ୍ୱର ସେମାନଙ୍କୁ ଖାଇବା, ପିନ୍ଧିବା, କୋଠାବାଡ଼ି କରିବା ବା ଯଶଖ୍ୟାତି ଅର୍ଜନ କରିବା ପାଇଁ ସଂସାରକୁ ପଠାଇଛନ୍ତି । କିନ୍ତୁ ସତ୍ୟ ହେଉଛି ଯେ, ଏଗୁଡ଼ିକ ମଧ୍ୟରୁ କୌଣସିଟି ମଧ୍ୟ ମାନବ ଜୀବନର ଉଦ୍ଦେଶ୍ୟ ନୁହେଁ ।

ଯଦି ଧନ-ସମ୍ପତ୍ତି ଜୀବନର ଲକ୍ଷ୍ୟ, ତେବେ ସେମାନଙ୍କର ଲକ୍ଷ୍ୟ କ'ଣ ଯେଉଁମାନେ ଧନଶାଳୀ ? ଯଦି ଯଶ-ଖ୍ୟାତି ଜୀବନର ଲକ୍ଷ୍ୟ, ତେବେ ଯଶବାନ୍ ଓ ଖ୍ୟାତନାମା ବ୍ୟକ୍ତିଗଣଙ୍କର ଜୀବିତ ରହିବାର ଉଦ୍ଦେଶ୍ୟ ପୁଣି କ'ଣ ?

ମନୁଷ୍ୟ ଏହା ଜାଣିବା ଉଚିତ ଯେ, କେଉଁ ଉଦ୍ଦେଶ୍ୟରେ ସ୍ରଷ୍ଟା ତାକୁ ସୃଷ୍ଟି କରିଛନ୍ତି । ଖାଇବା-ପିଇବା, ଘରଦୁଆର କରିବା, ପିଲା-କୁଟୁମ୍ବ ପୋଷିବା ଜୀବନର ଲକ୍ଷ ନୁହେଁ । ଏହି କାର୍ଯ୍ୟରେ ମଣିଷ ନିଜକୁ ଦିନରାତି ବ୍ୟସ୍ତ ରଖିଥାଏ । ଯଦି ଏହାହିଁ ଜୀବନର ଲକ୍ଷ୍ୟ, ତେବେ ଏହି ଲକ୍ଷ୍ୟ ତ ପଶୁ-ପକ୍ଷୀ ଓ କୀଟ-ପତଙ୍ଗ ମଧ୍ୟ ଭଲରୂପେ ପୂରଣ କରିପାରୁଛନ୍ତି । ଏଥିପାଇଁ 'ମାନବ' ସୃଷ୍ଟିର ଆବଶ୍ୟକତା କ'ଣ ଥିଲା ? ସଂସାରର ଶ୍ରେଷ୍ଠତମ ପ୍ରାଣୀ ଆଉ ତା' ଜୀବନର ଲକ୍ଷ୍ୟ ପଶୁପକ୍ଷୀଙ୍କ ଲକ୍ଷ୍ୟ ସହ ସମାନ ? ହାତୀ ଘୋଡ଼ା ମଧ୍ୟ ଖାଆନ୍ତି ପିଅନ୍ତି, ପକ୍ଷୀ ଓ ପିମ୍ପୁଡ଼ି ମଧ୍ୟ ଘର କରି ରୁହନ୍ତି ଏବଂ କୁକୁର ବିଲେଇ ମଧ୍ୟ ପିଲା ଜନ୍ମ କରନ୍ତି ଏବଂ ସେମାନଙ୍କର ଯତ୍ନ ନିଅନ୍ତି । ପୁଣି ମଣିଷ ଏ କ୍ଷେତ୍ରରେ ସେମାନଙ୍କଠାରୁ କିପରି ଶ୍ରେଷ୍ଠ ?

ଏହାଛଡ଼ା ଆମେ ଜାଣୁ ଯେ, ଧନ-ସମ୍ପତ୍ତି ଓ ସନ୍ତାନ-ସନ୍ତତିର ଉଦ୍ଦେଶ୍ୟ ଏକ ସୁଖମୟ ଜୀବନ ଅର୍ଥାତ୍ ଏଗୁଡ଼ିକ ସାହାଯ୍ୟରେ ସେ ସୁଖଶାନ୍ତିରେ ଜୀବନ ଅତିବାହିତ କରିପାରିବ । କିନ୍ତୁ ପ୍ରଶ୍ନ ହେଉଛି 'ସୁଖ-ଶାନ୍ତିରେ' ରହି ମଣିଷ ଏଠାରେ କରିବ କ'ଣ ? ଯଦି ଏହି ପ୍ରଶ୍ନଟିର ଉତ୍ତର ଆମେ ପାଇଯିବା, ତେବେ ମାନବ ଜନ୍ମର ଉଦ୍ଦେଶ୍ୟ ବୁଝିପାରିବା ।

ମନୁଷ୍ୟ ଭଳି ଏକ ଅମୂଲ୍ୟ ସୃଷ୍ଟି ଆକସ୍ମିକ ଭାବରେ କିମ୍ବା ବିନା କୌଣସି କାରଣରେ ସଂସାରକୁ ଚାଲିଆସିନାହିଁ । ତା' ସୃଷ୍ଟି ପଛରେ ଏକ ସୁସଙ୍ଗଠିତ ଓ ସୁନିୟନ୍ତ୍ରିତ ଯୋଜନା କାର୍ଯ୍ୟ କରୁଛି । ସେ ପ୍ରାଣୀ କଦାପି ସାଧାରଣ ହୋଇନପାରେ, ଯାହାକୁ ଧରାପୃଷ୍ଠରେ ଜୀବିତ ରଖିବା ପାଇଁ ବ୍ରହ୍ମାଣ୍ଡର ଅନେକ ମହାଶକ୍ତି ଦିବାନିଶି କାର୍ଯ୍ୟରତ ଏବଂ ଯାହା ସେବାରେ ସୂର୍ଯ୍ୟ, ଚନ୍ଦ୍ର, ଜଳବାୟୁ ଅହରହ ଲାଗି ରହିଛନ୍ତି । ତା'ରି ପାଇଁ ସୂର୍ଯ୍ୟ ଉଏଁ, ତା'ରି ପାଇଁ ପବନ ବହେ, ତା'ରି ପାଇଁ ବର୍ଷା ହୁଏ, ତା'ରି ପାଇଁ ବୃକ୍ଷ ଉଠେ, ତା'ରି ପାଇଁ ବିଶାଳ ସମୁଦ୍ର, ପାହାଡ଼ ଓ ଜଙ୍ଗଲଗୁଡ଼ିକ ସୃଷ୍ଟି । ଏଗୁଡ଼ିକ ସବୁ ମଣିଷକୁ ଜୀବିତ ରଖିବାରେ କୌଣସି ନା କୌଣସି ପ୍ରକାରେ ସାହାଯ୍ୟ କରିଥାନ୍ତି । ଏଗୁଡ଼ିକ ନଥିଲେ ଧରାପୃଷ୍ଠରେ ମାନବଜୀବନ ସମ୍ଭବ ହୁଅନ୍ତା ନାହିଁ । କେବଳ ଏତିକି

ନୁହେଁ, ବରଂ ସୂର୍ଯ୍ୟ, ଚନ୍ଦ୍ର, ପାଣି, ପବନ ଭଳି ପ୍ରାକୃତିକ ଶକ୍ତିଗୁଡ଼ିକ ପ୍ରତ୍ୟେକ ମୁହୂର୍ତ୍ତରେ ପରସ୍ପର ସହ ଆଶ୍ଚର୍ଯ୍ୟଜନକ ସମନ୍ୱୟ ରକ୍ଷା କରୁଛନ୍ତି, ଯେଉଁଥିରେ ସାମାନ୍ୟ ବ୍ୟତିକ୍ରମ ମାନବ ଜୀବନକୁ ବିପଦାପନ୍ନ କରିଦିଅନ୍ତା । ପୃଥିବୀ କକ୍ଷପଥରେ ଏକ ନିର୍ଦ୍ଧାରିତ ବ୍ୟବଧାନ ରଖି ଘୂରୁଛି, ଗ୍ରହଗୁଡ଼ିକ ନିଜ ନିଜ ମଧ୍ୟରେ ଏକ ମପାଚୁପା ଦୂରତ୍ୱ ରଖି ଚାଲିଛନ୍ତି, ସୂର୍ଯ୍ୟ ମାପିଚୁପି ଉତ୍ତାପ ଦେଉଛି ଏବଂ ଜୀବନଧାରଣ ପାଇଁ ଆବଶ୍ୟକ ହେଉଥିବା ଗ୍ୟାସ୍‌ଗୁଡ଼ିକ ଉପଯୁକ୍ତ ଅନୁପାତ ରକ୍ଷା କରୁଛନ୍ତି । ସମସ୍ତେ ଏକ ନିର୍ଦ୍ଧାରିତ ନିୟମରେ ବନ୍ଧା ।

ପ୍ରଶ୍ନ ହେଉଛି ଯେ, କେଉଁଥିପାଇଁ ଏତେ ବଡ଼ ଆୟୋଜନ ? କ'ଣ ପାଇଁ ବ୍ରହ୍ମାଣ୍ଡର ଏ କାରଖାନା ଚାଲିଛି ? କ'ଣ ଏହା ଅକାରଣ ହୋଇପାରେ ? ଯେଉଁ ସଂସାରରେ ସୂର୍ଯ୍ୟ, ଚନ୍ଦ୍ର ଅଯଥାରେ ଉଦୟ ହୁଅନ୍ତି ନାହିଁ, ମେଘ ଅକାରଣରେ ବରଷେ ନାହିଁ ବା ପବନ ନିରର୍ଥକ ବହେନାହିଁ, ସେ ସଂସାର ନିଜର ସମସ୍ତ କଳକାରଖାନାଗୁଡ଼ିକ ସହ ବିନା ଉଦ୍ଦେଶ୍ୟରେ ଆଦୌ ଗଢ଼ାଯାଇ ନାହିଁ । ମଣିଷ ଗୋଟିଏ ସାମାନ୍ୟ ଛୁଞ୍ଚି ମଧ୍ୟ ବିନା କାରଣରେ ତିଆରି କରେ ନାହିଁ, ଅଥଚ ଏତେ ଶୃଙ୍ଖଳିତ ଭାବେ ଚାଲୁଥିବା ଏ ବିଶାଳ ବ୍ରହ୍ମାଣ୍ଡକୁ ସ୍ରଷ୍ଟା ବିନା କାରଣରେ ଗଢ଼ି ଦେଇଛନ୍ତି ? ବିଚାରବେଳେ ମନୁଷ୍ୟକୁ ସ୍ରଷ୍ଟା ପଚାରିବେ :

> ''କ'ଣ ତୁମେମାନେ ଏହା ଭାବିଥିଲ ଯେ, ଆମ୍ଭେ ତୁମମାନଙ୍କୁ ଅକାରଣରେ ସୃଷ୍ଟି କରିଥିଲୁ, ଆଉ ତୁମ୍ଭେମାନେ ଆମ୍ଭ ନିକଟକୁ ଫେରିବ ନାହିଁ ?''

**କୁର୍‌ଆନ ୨୩:୧୧୫**

ବିଚାର କରିବାର କଥା ଯେ, ଯଦି ସୂର୍ଯ୍ୟ, ଚନ୍ଦ୍ର, ଜଳବାୟୁ, ସମୁଦ୍ର, ବୃକ୍ଷଲତା ବା ଜୀବଜଗତ ନଷ୍ଟ ହୋଇଯାଆନ୍ତି, ତେବେ ଜଣେ ମଣିଷ ମଧ୍ୟ ଧରାପୃଷ୍ଠରେ ବଞ୍ଚିରହିବା ସମ୍ଭବ ନୁହେଁ । ମାତ୍ର ଯଦି ଧରାପୃଷ୍ଠରୁ ସମଗ୍ର ମାନବଜାତି ଲୋପ ପାଇଯାଏ, ତଥାପି ଏମାନଙ୍କର କୌଣସି କ୍ଷତି ହେବନାହିଁ । ସୂର୍ଯ୍ୟ ଉଦୟ ହେଉଥିବ, ପବନ ବୋହୁଥିବ, ମେଘ ବରଷୁଥିବ, ଫୁଲ ଫୁଟୁଥିବ, ବୃକ୍ଷ ଉଠୁଥିବ, ସମୁଦ୍ର ଗରଜୁଥିବ ଏବଂ ପଶୁପକ୍ଷୀମାନେ ନିଜ ନିଜ କାର୍ଯ୍ୟରେ ଲାଗିଥିବେ । ମଣିଷ ନଥିଲେ ଏମାନଙ୍କର କୌଣସି ଅସୁବିଧା ହେବନାହିଁ । ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ, ଏଗୁଡ଼ିକ ସବୁ ମନୁଷ୍ୟକୁ କିଛି ନା କିଛି ଫାଇଦା ପହଞ୍ଚେଇବା ପାଇଁ ତା' ସେବାରେ ନିୟୋଜିତ ହୋଇଛନ୍ତି ।

କିନ୍ତୁ ମଣିଷ ଏମାନଙ୍କ ମଧ୍ୟରୁ କାହାରି କାମର ନୁହେଁ । ନା ସେ ସୂର୍ଯ୍ୟ-ଚନ୍ଦ୍ର କାମରେ ଆସିପାରେ, ନା ଜଳ-ବାୟୁର କୌଣସି ସେବା କରିପାରେ । ସେ ଏମାନଙ୍କ ମଧ୍ୟରୁ କାହାରି ସେବା ପାଇଁ ସୃଷ୍ଟି ହୋଇନାହିଁ । ପୁଣି ତା' ଅସ୍ତିତ୍ୱ କାହା ପାଇଁ ? ଯଦି ଆମେ ଗଭୀର ଭାବରେ ଚିନ୍ତା କରିବା, ତେବେ ଜାଣିପାରିବା ଯେ ସେ କେବଳ ଜଗତସ୍ୱାମୀଙ୍କ ସେବା ପାଇଁ ଉଦ୍ଦିଷ୍ଟ ।

ଆସନ୍ତୁ ଗୋଟିଏ ଉଦାହରଣରୁ ଏ ବିଷୟ ବୁଝିବାକୁ ଚେଷ୍ଟା କରିବା । ଧରନ୍ତୁ, ଜଣେ ଧନୀବ୍ୟକ୍ତି କିଛି ଘୋଡ଼ା ପୋଷିବା ପାଇଁ ସ୍ଥିର କଲା । ସେଥିପାଇଁ ସେ ଗୋଟିଏ ବିଶାଳ ପଡ଼ିଆ କିଣି ସେଥିରେ ଗୋଟିଏ ଘୋଡ଼ାଶାଳ ନିର୍ମାଣ କଲା । ସେଠାରେ ସେମାନଙ୍କର ରହିବା ଏବଂ ଖାଇବା ପିଇବାର ଉପଯୁକ୍ତ ବ୍ୟବସ୍ଥା କରାଗଲା । ଯଥେଷ୍ଟ ଖାଦ୍ୟ ମହଜୁଦ ରଖାଗଲା, ନଳକୂପ ବ୍ୟବସ୍ଥା କରାଗଲା, ବିଜୁଳି ଆଲୋକ ଲାଗିଲା, ସଇସ ଓ କର୍ମଚାରୀ ନିଯୁକ୍ତ ହେଲେ ଏବଂ ଘୋଡ଼ାମାନଙ୍କ ଚିକିତ୍ସା ପାଇଁ ଡାକ୍ତର ମଧ୍ୟ ନିଯୁକ୍ତ ହେଲେ । ଏ ସମସ୍ତ ଆୟୋଜନ ଏଇଥିପାଇଁ ଯେ, ଘୋଡ଼ାଗୁଡ଼ିକ ଖାଇପିଇ ସୁସ୍ଥ ସବଳ ରୁହନ୍ତୁ । କିନ୍ତୁ ସେମାନେ ସୁସ୍ଥସବଳ ହୋଇ ରହିବେ କ'ଣ ପାଇଁ ? ସେମାନଙ୍କ କର୍ତ୍ତବ୍ୟ କ'ଣ ? କ'ଣ ସେମାନେ ବିଶାଳ ଘୋଡ଼ାଶାଳର କୌଣସି ବସ୍ତୁ ବା କର୍ମଚାରୀ ପାଇଁ ଉଦ୍ଦିଷ୍ଟ ? ନା, ବରଂ ସେମାନେ କେବଳ ଘୋଡ଼ାଶାଳର ସ୍ୱାମୀଙ୍କ ସେବା ପାଇଁ ଉଦ୍ଦିଷ୍ଟ, ଯିଏ ସମଗ୍ର ଘୋଡ଼ାଶାଳ ସେମାନଙ୍କ ପାଇଁ ନିର୍ମାଣ କରିଛି ଏବଂ ସେମାନଙ୍କ ପ୍ରତିପୋଷଣ କରୁଛି । ସେବା ମଧ୍ୟ ମାଲିକର ଇଚ୍ଛାନୁସାରେ କରିବା ଉଚିତ, ନିଜ ଇଚ୍ଛା ଅନୁଯାୟୀ ନୁହେଁ । ମାଲିକ ଯେମିତି ଚାହେଁ, ଯେମିତି ଶିକ୍ଷା ଦିଏ, ଠିକ୍ ସେହିପରି କରିବା ଏବଂ ମାଲିକର ସମ୍ପୂର୍ଣ୍ଣ ବିଶ୍ୱସ୍ତ ହେବା ଘୋଡ଼ାମାନଙ୍କର କର୍ତ୍ତବ୍ୟ । ଯଦି କୌଣସି ଘୋଡ଼ା କଥା ନ ମାନେ ବା ଅବାଧ୍ୟ ହୁଏ, ତେବେ ସେ ଚାବୁକ ମାଡ଼ ଖାଇବ ।

ସେହିପରି ମଣିଷ ମଧ୍ୟ ନିଜ ପାଳନକର୍ତ୍ତାଙ୍କ ସେବା ପାଇଁ ସୃଷ୍ଟି ହୋଇଛି । ସଂସାରରୂପକ ଘୋଡ଼ାଶାଳର କୌଣସି ବସ୍ତୁ ବା କର୍ମଚାରୀର କୃପାବଳରେ ସେ ବଞ୍ଚନାହିଁ । ତେଣୁ ସେ ନିଜ ପ୍ରକୃତ ସ୍ୱାମୀଙ୍କୁ ଚିହ୍ନିବା ଉଚିତ । ତାଙ୍କ ପ୍ରତି ସମ୍ପୂର୍ଣ୍ଣ ସମର୍ପିତ ହୋଇ ତାଙ୍କରି ଆଜ୍ଞା ଅନୁସାରେ ସେବା କରିବା ଉଚିତ । ଏଇଥିପାଇଁ ଈଶ୍ୱର ତାକୁ ସୃଷ୍ଟି କରିଛନ୍ତି । ଏହା ମଣିଷ ଉପରେ ସ୍ରଷ୍ଟାଙ୍କର

ଅଧିକାର । ଏହାହିଁ ମଣିଷର କର୍ତ୍ତବ୍ୟ ଏବଂ ଏହାହିଁ ତା' ଜୀବନର ଉଦ୍ଦେଶ୍ୟ । ପବିତ୍ର କୁର୍‌ଆନରେ ମାନବ ସୃଷ୍ଟିର ଉଦ୍ଦେଶ୍ୟ ବର୍ଣ୍ଣନା କରି ଈଶ୍ୱର କହିଛନ୍ତି :

> ''ଆମ୍ଭେ ଜିନ୍* ଓ ମାନବକୁ କେବଳ ଆମ୍ଭର ସେବା-ଉପାସନା ସକାଶେ ସୃଷ୍ଟି କରିଅଛୁ ।''

**କୁର୍‌ଆନ ୫୧:୫୬**

ଯଦି ମନୁଷ୍ୟ ନିଜ ସ୍ରଷ୍ଟାଙ୍କୁ ଚିହ୍ନି, ତାଙ୍କ ବିଧିବିଧାନ ଅନୁସାରେ ସେବା ଉପାସନା କରେ, ତେବେ ସେ ପୁରସ୍କୃତ ହେବା ଯୋଗ୍ୟ ଏବଂ ଯଦି ସେ ଅବଜ୍ଞା କରେ, ତେବେ ଦଣ୍ଡଭୋଗ କରିବ ।

ସେବା-ଉପାସନା ଅର୍ଥ କେବଳ ପୂଜାର୍ଚ୍ଚନା ନୁହେଁ । ପୂଜା ଆରାଧନା କରିବା ସହ ଜୀବନର ସବୁ କ୍ଷେତ୍ରରେ ସ୍ରଷ୍ଟାଙ୍କ ଇଚ୍ଛାନୁଯାୟୀ କାର୍ଯ୍ୟ କରିବା ବା ତାଙ୍କ ନିର୍ଦ୍ଧାରିତ ନୀତିନିୟମ ପାଳନ କରିବା ହେଉଛି ପ୍ରକୃତ ସେବା ଏବଂ ପ୍ରକୃତ ଉପାସନା । କେବଳ ଉପାସନା ପୀଠରେ ନୁହେଁ, ଘରେ, ପରିବାର ମଧ୍ୟରେ, କାର୍ଯ୍ୟାଳୟ ଓ ବ୍ୟବସାୟ କେନ୍ଦ୍ରରେ––ଜୀବନର ପ୍ରତ୍ୟେକ କର୍ମକ୍ଷେତ୍ରରେ ମଣିଷ ସ୍ରଷ୍ଟାଙ୍କର ଆଜ୍ଞା ପାଳନ କରି ନିଜକୁ ତାଙ୍କର ଜଣେ ଆଜ୍ଞାଧୀନ ସେବକ ରୂପେ ପ୍ରମାଣିତ କରିବା ଉଚିତ ।

ଯେଉଁ ଜ୍ଞାନୀଜନମାନେ ନିଜର ଅଦ୍ୱିତୀୟ, ଅନୁପମ ସ୍ରଷ୍ଟାଙ୍କୁ ଜାଣିପାରିଲେ ଏବଂ ତାଙ୍କର ଧର୍ମଦୂତ ଓ ଧର୍ମଗ୍ରନ୍ଥକୁ ଚିହ୍ନିପାରିଲେ ଏବଂ ତାଙ୍କ ଆଜ୍ଞା ଅନୁଯାୟୀ ସେବା ଉପାସନା କଲେ, ସେହି ଧର୍ମାତ୍ମାମାନେ ପ୍ରକୃତରେ ନିଜ ଜୀବନର ଲକ୍ଷ ହାସଲ କଲେ । ଏହିମାନଙ୍କଠାରେ କିଛି ସ୍ୱତନ୍ତ୍ରତା ରହିଛି ଏବଂ ଏହିମାନେ ହିଁ ପୁରସ୍କୃତ ହେବା ଯୋଗ୍ୟ । ଅନ୍ୟପକ୍ଷରେ ଯେଉଁମାନେ ନିଜ ସ୍ରଷ୍ଟା ଏବଂ ତାଙ୍କ ବିଧାନକୁ ଚିହ୍ନିବାରେ ନିଜ ବୁଦ୍ଧିକୁ ବ୍ୟବହାର କରିବା ମଧ୍ୟ ଉଚିତ ମନେକଲେ ନାହିଁ, କିମ୍ବା ବୁଝିସାରି ମଧ୍ୟ ବିବେକର ଡାକକୁ ଅଶୁଣା କରିଦେଲେ ଏବଂ ମନଇଚ୍ଛା ଜୀବନ ବିତାଇ ସ୍ରଷ୍ଟା ଓ ସୃଷ୍ଟି ପ୍ରତି ଅନ୍ୟାୟ ଅବିଚାର କରି ଏ ସଂସାରରୁ ଚାଲିଗଲେ, ଏମାନେ ଈଶ୍ୱରଦ୍ରୋହୀ ଏବଂ ଦଣ୍ଡିତ ହେବା ଯୋଗ୍ୟ ।

□□□

---

* ଏକ ଅଦୃଶ୍ୟ ପ୍ରାଣୀ ।

# ମନୁଷ୍ୟ ଉତ୍ତରଦାୟୀ

ପୂର୍ବ ଆଲୋଚନାରୁ ଜଣାଗଲା ଯେ, ସ୍ରଷ୍ଟାଙ୍କ ବିଧିବିଧାନ ଅନୁଯାୟୀ ତାଙ୍କର ସେବା-ଉପାସନା କରିବା ପାଇଁ ହିଁ ମାନବର ସୃଷ୍ଟି । ଏହାହିଁ ତାର କର୍ତ୍ତବ୍ୟ ଏବଂ ଏହି କର୍ତ୍ତବ୍ୟ ସ୍ରଷ୍ଟାଙ୍କ ନିକଟରେ ମଣିଷର ଉତ୍ତରଦାୟିତ୍ୱ ପ୍ରମାଣିତ କରୁଛି । ପ୍ରତ୍ୟେକ ମନୁଷ୍ୟକୁ ନିଜ କର୍ମର ହିସାବ ଅବଶ୍ୟ ଦେବାକୁ ହେବ ।

ଯିଏ ମଣିଷକୁ ସୃଷ୍ଟି କରି, ତାକୁ ହତ୍ୟା, ଲୁଣ୍ଠନ, ଶୋଷଣ ଓ ଯାବତୀୟ ଅନ୍ୟାୟ ଅତ୍ୟାଚାର କରିବାର ସ୍ୱାଧିନତା ଦେଇ ସମାଜର ଅଗଣିତ ନରନାରୀଙ୍କ ଗହଣରେ ବାସ କରିବାକୁ ଛାଡ଼ିଦେଇଛନ୍ତି, ତାଙ୍କ ଭଳି ସର୍ବଶକ୍ତିମାନଙ୍କଠାରୁ କ'ଣ ଆଶା କରାଯାଇପାରେ ଯେ, ମଣିଷ ଯାହା ଇଚ୍ଛା ତାହା କରିଯିବ, ଆଉ ସେ ତାକୁ କିଛି ହେଲେ ପଚାରିବେ ନାହିଁ । ନିରୀହଙ୍କ ଗୁହାରୀ ଶୁଣିବେ ନାହିଁ, ଦୋଷୀକୁ ଦଣ୍ଡ ଦେବେ ନାହିଁ ବା ସାଧୁକୁ ପ୍ରତିଦାନ ଦେବେ ନାହିଁ ? ଏହ କଦାପି ସମ୍ଭବ ନୁହେଁ ।

ଜଣେ ଭୃତ୍ୟର ନିଜ ମାଲିକ ପ୍ରତି ଉତ୍ତରଦାୟିତ୍ୱ ଅଛି । ଜଣେ ପ୍ରଜାର ରାଜାଙ୍କ ପ୍ରତି ଉତ୍ତରଦାୟିତ୍ୱ ଅଛି । ଅଥଚ ଭକ୍ତର ଭଗବାନଙ୍କ ପ୍ରତି ଉତ୍ତରଦାୟିତ୍ୱ କିପରି ରହିବ ନାହିଁ ? ଆମେ ଆମର ଗୋଟିଏ ଗୋଟିଏ କର୍ମ ଦ୍ୱାରା ଅସଂଖ୍ୟ ନରନାରୀଙ୍କ ଜୀବନକୁ ପ୍ରଭାବିତ କରି, ସଂସାରରୁ ଖସି ଚାଲିଯିବା ଆଉ ସ୍ରଷ୍ଟା ଆମ ମୃତ୍ୟୁ ପରେ ନିଜ କାର୍ଯ୍ୟାଳୟ ବନ୍ଦ କରିଦେବେ ?

ଯଦି ମୃତ୍ୟୁ ପରେ ଉତ୍ତରଦାୟିତ୍ୱ ନ ରହେ, ତେବେ ସତ ଆଉ ମିଛ, ନ୍ୟାୟ ଆଉ ଅନ୍ୟାୟ ଏବଂ ପାପ ଆଉ ପୁଣ୍ୟ ସମାନ ହୋଇଯିବ । ସୁଜନ ଓ ଦୁର୍ଜନ ବା ପୁଣ୍ୟବନ୍ତ ଓ ପାପୀ ମଧ୍ୟରେ କୌଣସି ତଫାତ୍ ରହିବ ନାହିଁ । ସ୍ୱର୍ଗ ଓ ନର୍କ ନିରର୍ଥକ ହୋଇଯିବ ଏବଂ ଏ ବିଶାଳ ସଂସାରର ସୃଷ୍ଟି ଏକ ନାଟକ ହୋଇଯିବ । ତେଣୁ କୁର୍‌ଆନ କହେ :

''ଏବଂ ଅଲ୍ଲାହ ଆକାଶ ଓ ପୃଥିବୀକୁ ନ୍ୟାୟର ସହିତ ସୃଷ୍ଟି କରିଛନ୍ତି, ଯଦ୍ୱାରା ପ୍ରତ୍ୟେକ ବ୍ୟକ୍ତି ତା' ଅର୍ଜିତ କର୍ମ ଅନୁସାରେ ପ୍ରତିଦାନ ପାଇବ ଏବଂ ସେମାନଙ୍କ ମଧ୍ୟରୁ କାହାରି ପ୍ରତି ଅବିଚାର କରାଯିବ ନାହିଁ ।''

କୁର୍‌ଆନ ୪୫:୨୨

ତେଣୁ ଈଶ୍ୱର ମନୁଷ୍ୟର ପ୍ରତ୍ୟେକ କର୍ମର ରେକର୍ଡ ରଖନ୍ତି । କୁର୍‌ଆନରେ ଈଶ୍ୱର ଘୋଷଣା କରିଛନ୍ତି :

''ଏବଂ ଆମ୍ଭେ ପ୍ରତ୍ୟେକ ବ୍ୟକ୍ତିର କର୍ମକୁ ତା' ଗଳାର ହାର କରି (ବାନ୍ଧି) ଦେଇଛୁ ଏବଂ ଆମ୍ଭେ ଅନ୍ତିମ ବିଚାର ଦିନ ଏହାର ଏକ ପୁସ୍ତକ ପ୍ରସ୍ତୁତ କରି ତା' ସମ୍ମୁଖରେ ରଖିଦେବୁ, ଯାହାକୁ ସେ ଉନ୍ମୁକ୍ତ ଥିବାର ଦେଖିବାକୁ ପାଇବ । (ଏବଂ ତାକୁ କୁହାଯିବ) ନିଜ କର୍ମପତ୍ର (ନିଜେ) ପାଠକର; ଆଜି ତୁମେ ନିଜେ ହିଁ ନିଜ ହିସାବ ନେବାପାଇଁ ଯଥେଷ୍ଟ ।''

କୁର୍‌ଆନ ୧୭ : ୧୩-୧୪

ଗୋଟିଏ ଉଦାହରଣରୁ ଆମେ ଏହା ସହଜରେ ବୁଝିପାରିବା । ସେଲ୍‌ଫୋନ୍ ଆଜି ଘରେ ଘରେ ବ୍ୟବହାର ହେଉଛି । ସେଲ୍‌ଫୋନ୍‌ର ଅଫିସ୍ ଫୋନ୍ ବ୍ୟବହାରକାରୀକୁ ଦେଖେ ନାହିଁ । କିନ୍ତୁ ଗ୍ରାହକଟି ଫୋନ୍‌କୁ କିଭଳି ବ୍ୟବହାର କଲା, କେତେବେଳେ କଥା ହେଲା, କାହା ସହ ହେଲା, କେତେ ସେକେଣ୍ଡ ହେଲା, କେତେ ଦୂରରେ ଥିବା ଲୋକ ସହ ହେଲା, ସେ ସହରରେ ଥାଉ, ଜଙ୍ଗଲରେ ଥାଉ ବା ଘରେ ଚାରିକାନ୍ଥ ମଧ୍ୟରେ ଲୁଚିଥାଉ, ସେଲ୍‌ଫୋନର କାର୍ଯ୍ୟାଳୟ ତାର ସମସ୍ତ କଥାର ଗୋଟି ଗୋଟି ରେକର୍ଡ଼ ରଖେ । ସିମ୍ କାର୍ଡ଼ର ବ୍ୟବହାର ତା' ନିର୍ମାତାଠାରୁ ଲୁଚିପାରେ ନାହିଁ । ସାମାନ୍ୟ ଗୋଟିଏ ଛୋଟ ଯନ୍ତ୍ରର ଏଭଳି କରାମତି ଯାହାକୁ ମଣିଷ ଗଢ଼ିଛି । ମଣିଷର ସ୍ରଷ୍ଟା କ'ଣ ତା' କାର୍ଯ୍ୟକଳାପ ସମ୍ବନ୍ଧୀୟ ରେକର୍ଡ଼ ରଖିବା ପାଇଁ ସମର୍ଥ ନୁହନ୍ତି ? ଅବଶ୍ୟ ସେ ରଖୁଛନ୍ତି । ପ୍ରତ୍ୟେକ ବ୍ୟକ୍ତିର ସମସ୍ତ ଛୋଟ-ବଡ଼ କର୍ମର ଗୋଟି ଗୋଟି ରେକର୍ଡ଼ ତାଙ୍କ ନିକଟରେ ରହେ । ପରଲୋକରେ ସେ ଏହା ଦେଖି ମଧ୍ୟ ପାରିବ, ଠିକ ସେହିପରି ଯେପରି ସେ ଅନେକ ବର୍ଷ ତଳର କୌଣସି ସ୍ମରଣୀୟ ଘଟଣାର ଲାଇଭ୍ ଭିଡ଼ିଓ ରେକର୍ଡ଼ିଂ ଦେଖେ । ଅବିକଳ ସେହି ଚିତ୍ର, ସେହି ସ୍ଥାନ, ସେହି କାଳ, ସେହି ପାତ୍ର—ସବୁ କିଛି ଅବିକଳ ସମାନ ।

କେବଳ ସାଧାରଣ ମନୁଷ୍ୟର ନୁହେଁ, ମାନବ ଜଗତର ମାର୍ଗଦର୍ଶନ ପାଇଁ ଈଶ୍ୱରଙ୍କ ଦ୍ୱାରା ପୃଥିବୀକୁ ପଠାଯାଇଥିବା ମହାମାନ୍ୟ ଧର୍ମଦୂତମାନଙ୍କର ମଧ ଉତ୍ତରଦାୟିତ୍ୱ ଅଛି । ଏ ବିଷୟରେ ଈଶ୍ୱର କହିଛନ୍ତି :

> "ଏବଂ ଯେଉଁମାନଙ୍କ ପ୍ରତି ବାର୍ତ୍ତାବହ ପଠାଯାଇଥିଲେ, ଆମ୍ଭେ ସେମାନଙ୍କୁ ନିଶ୍ଚୟ କୈଫିୟତ ମାଗିବୁ ଏବଂ ଆମ୍ଭେ ବାର୍ତ୍ତାବହମାନଙ୍କୁ ମଧ ନିଶ୍ଚୟ ପଚାରିବୁ (ଯେ ସେମାନେ ଆମ୍ଭ ବାର୍ତ୍ତା ପହଞ୍ଚାଇବାର କର୍ତ୍ତବ୍ୟ କେତେଦୂର ପାଳନ କଲେ) ।"
>
> କୁର୍‌ଆନ ୭ : ୬

ଅନ୍ତିମ ବିଚାରଦିନ କର୍ମଗୁଡ଼ିକର ଓଜନ ହେବ । ଯଦି ପୁଣ୍ୟ ଭାର ଅଧିକ ହୁଏ, ତେବେ ସ୍ୱର୍ଗ ଏବଂ ଯଦି ପାପ ଭାର ଅଧିକ ହୁଏ ତେବେ ନର୍କର ଆଦେଶ ଦିଆଯିବ । କୁର୍‌ଆନ କହିଛି :

> "ଏବଂ ସେଦିନ କର୍ମର ଓଜନ ହେବା ଏକ ସତ୍ୟ । ସୁତରାଂ ଯେଉଁମାନଙ୍କ କର୍ମର ଓଜନ ଅଧିକ ହେବ ସେଇ ବ୍ୟକ୍ତିମାନେ ସଫଳ ହେବେ । ଏବଂ ଯେଉଁମାନଙ୍କ କର୍ମର ଓଜନ ହାଲୁକା ହେବ ସେମାନେ ନିଜେ ନିଜକୁ କ୍ଷତିଗ୍ରସ୍ତ କରିବେ; କାରଣ ସେମାନେ ଆମ୍ଭର ବାଣୀ ପ୍ରତି ଅନ୍ୟାୟ କରିଥିଲେ ।
>
> କୁର୍‌ଆନ, ୭ : ୮-୯

ଈଶ୍ୱରଙ୍କ ପ୍ରତି ଉତ୍ତରଦାୟିତ୍ୱବୋଧ ଯୁଗେ ଯୁଗେ ଦିବ୍ୟଧର୍ମର ଏକ ଅପରିବର୍ତ୍ତନୀୟ ସିଦ୍ଧାନ୍ତ ରହିଆସିଛି ଏବଂ କୁର୍‌ଆନ ପୂର୍ବରୁ ଆସିଥିବା ସମସ୍ତ ଦିବ୍ୟଗ୍ରନ୍ଥ ଏ ବିଷୟରେ ସତର୍କ କରିଛନ୍ତି । ଆଜି ମଧ ପ୍ରାଚୀନ ଧର୍ମଗ୍ରନ୍ଥଗୁଡ଼ିକରେ ଏହି ସିଦ୍ଧାନ୍ତ ଦେଖିବାକୁ ମିଳେ । ଆସନ୍ତୁ, ଦେଖିବା ବିଶ୍ୱର ମହାନ୍ ଗ୍ରନ୍ଥ ବେଦ ଓ ବାଇବଲ୍‌ରେ ଏହି ସିଦ୍ଧାନ୍ତ ବିଷୟରେ କ'ଣ ଉଲ୍ଲେଖ ଅଛି ।

ସନାତନ ଧର୍ମର ପ୍ରାଚୀନ ଓ ସର୍ବୋଚ୍ଚ ଧର୍ମଗ୍ରନ୍ଥ ବେଦ ପରଲୋକ ବିଷୟରେ ସତର୍କ କରି ମନୁଷ୍ୟକୁ ଈଶ୍ୱରଙ୍କ ପ୍ରତି ସର୍ବଦା ଭୟ ରଖିବାର ଉପଦେଶ ଦେଇ କହିଛି :

> "ଯେଉଁ ମନୁଷ୍ୟ ଈଶ୍ୱରଙ୍କ ପ୍ରତି ଭୟ କରନ୍ତି କି ସେ ସଦା ସବୁ ଦିଗରୁ ଆମ୍ଭମାନଙ୍କୁ ଦେଖୁଛନ୍ତି, ଏହି ଜଗତ୍ ଈଶ୍ୱରଙ୍କଠାରୁ ବ୍ୟାପ୍ତ ଏବଂ ସର୍ବତ୍ର ଈଶ୍ୱର ବିଦ୍ୟମାନ ଅଛନ୍ତି, ଏହି ଭାବରେ ବ୍ୟାପକ ଅନ୍ତର୍ଯ୍ୟାମୀ ପରମାତ୍ମାଙ୍କର ନିଶ୍ଚୟ କରି ଅନ୍ୟାୟ ଆଚରଣ ଦ୍ୱାରା

କାହାରି କିଛି ଦ୍ରବ୍ୟ ମଧ୍ୟ ଗ୍ରହଣ କରିବାକୁ ଚାହାନ୍ତି ନାହିଁ, ସେ ଧର୍ମାତ୍ମା ହୋଇ ଏହି ଲୋକରେ ସୁଖପ୍ରାପ୍ତ ହୁଅନ୍ତି ଏବଂ ପରଲୋକରେ ମୁକ୍ତିରୂପ ସୁଖ ଲାଭ କରି ସଦା ଆନନ୍ଦରେ ରହନ୍ତି ।''

ଯଜୁର୍ବେଦ-ଅଧ୍ୟାୟ ୪୦, ମନ୍ତ୍ର ୧

ଈଶ୍ୱର ପାପୀ ଓ ପୁଣ୍ୟାତ୍ମାମାନଙ୍କୁ କର୍ମଫଳ ପ୍ରଦାନ କରିବେ ବୋଲି ଘୋଷଣା କରି ବେଦ କହେ :

''ଭୂତ, ଭବିଷ୍ୟତ ଏବଂ ବର୍ତ୍ତମାନ, ଏହି ତ୍ରିକାଳଜ୍ଞ ଈଶ୍ୱରଙ୍କ ବିନା ପ୍ରଭୁ ତଥା କାର୍ଯ୍ୟକାରଣ ବା ପାପୀ ଏବଂ ପୁଣ୍ୟାତ୍ମା ଲୋକମାନଙ୍କର କର୍ମଫଳଦାତା ବା ବ୍ୟବସ୍ଥାପକ ଅନ୍ୟ କେହି ନାହାନ୍ତି । ଏହାସବୁ ମନୁଷ୍ୟ ସ୍ୱୀକାର କରିବା ଉଚିତ ।''

ଋଗ୍‌ବେଦ, ପ୍ରଥମ ମଣ୍ଡଳ, ସୂକ୍ତ-୯୬, ମନ୍ତ୍ର-୭

ମନୁଷ୍ୟର ଉତ୍ତରଦାୟିତ୍ୱ ସମ୍ପର୍କରେ ବାଇବଲ୍ କହେ :

''କିନ୍ତୁ ତୁମ୍ଭମାନଙ୍କୁ କହୁଅଛି, ମନୁଷ୍ୟମାନେ ଯେକୌଣସି ଅସାର କଥା କହନ୍ତି, ବିଚାର ଦିନରେ ସେମାନେ ସେଥିର ଉତ୍ତର ଦେବେ ।''

ବାଇବଲ୍, ମାଥିଉ ୧୨ : ୩୬

ବାଇବଲ୍ ଏହା ମଧ୍ୟ କହେ :

''ଅତଏବ ଆମ୍ଭମାନଙ୍କର ପ୍ରତ୍ୟେକ ଜଣକୁ ଈଶ୍ୱରଙ୍କ ଛାମୁରେ ନିଜ ନିଜର ହିସାବ ଦେବାକୁ ହେବ ।''

ବାଇବଲ, ରୋମୀୟ ୧୪ : ୧୨

ଈଶ୍ୱର କର୍ମଫଳ ଦେବାପାଇଁ ମଣିଷକୁ ପରୀକ୍ଷା କରନ୍ତି ବୋଲି ବର୍ଣ୍ଣନ କରି ବାଇବଲ୍ କହିଛି—

''ଆମ୍ଭେ ମହାପ୍ରଭୁ, ପ୍ରତ୍ୟେକ ମନୁଷ୍ୟକୁ ତାହାର ଆଚରଣ ଅନୁସାରେ ତାହାର କର୍ମର ଫଳ ଦେବପାଇଁ ଅନ୍ତଃକରଣ ଅନୁସନ୍ଧାନ କରୁ, ଆମ୍ଭେ ମର୍ମ ପରୀକ୍ଷା କରୁ ।''

ବାଇବଲ, ଯିରିମିୟ ୧୭ : ୧୦

ଅନ୍ୟ ଏକ ସ୍ଥାନରେ ଏହା ମଧ୍ୟ ଉଲ୍ଲେଖ ଅଛି :

"ସେ ପ୍ରତ୍ୟେକ ଲୋକକୁ ନିଜ ନିଜ କର୍ମାନୁସାରେ ଫଳ ଦେବେ ।"

**ବାଇବଲ, ରୋମୀୟ ୨ : ୬**

ମୃତମାନଙ୍କର ପୁନରୁତ୍‌ଥାନ କଥା ଉଲ୍ଲେଖ କରି ବାଇବଲ୍ କହିଛି–

"ମୃତମାନଙ୍କ ପୁନରୁତ୍‌ଥାନ କଥା ଶୁଣି କେହି କେହି ପରିହାସ କରିବାକୁ ଲାଗିଲେ, ଆଉ କେହି କେହି କହିଲେ ଆମ୍ଭେମାନେ ଆଉଥରେ ଏ ବିଷୟରେ ଆପଣଙ୍କଠାରୁ ଶୁଣିବା ।"

**ବାଇବଲ, ପ୍ରେରିତ ୧୭ : ୩୨**

ଉତ୍ତରଦାୟିତ୍ୱବୋଧ ହିଁ ମଣିଷର କର୍ମଗୁଡ଼ିକୁ ନିୟନ୍ତ୍ରିତ କରେ ଏବଂ ତାକୁ ଧର୍ମନିଷ୍ଠ କରି ଗଢ଼ିତୋଳେ । ଯେଉଁ ବ୍ୟକ୍ତି ଏହି ବିଶ୍ୱାସ ରଖିଥାଏ ଯେ, ଈଶ୍ୱର ତା'ର ସମସ୍ତ କର୍ମଗୁଡ଼ିକୁ ଦେଖୁଛନ୍ତି ଏବଂ ସେ ଆଜ୍ଞାକାରୀ ଭକ୍ତମାନଙ୍କୁ ଅନନ୍ତ ସୁଖମୟ ଜୀବନ ପ୍ରଦାନ କରିବେ ଏବଂ ଅବଜ୍ଞାକାରୀମାନଙ୍କୁ କଠୋର ଦଣ୍ଡ ଦେବେ, ତା' ଜୀବନ ଅବଶ୍ୟ ଶୃଙ୍ଖଳିତ ହେବ । ଅନ୍ୟ ପକ୍ଷରେ ଯାହାର ଧାରଣା ଥାଏ ଯେ, ମୃତ୍ୟୁପରେ ଆଉ ଜୀବନ ସମ୍ଭବ ନୁହେଁ ଏବଂ ଯେତେ ଯାହା କରି ମରିଗଲେ ମଧ୍ୟ କେହି ପଚାରିବାକୁ ନାହିଁ, ସେଭଳି ବ୍ୟକ୍ତିଠାରୁ କ'ଣ ନ୍ୟାୟ ବା ଶୃଙ୍ଖଳା ଆଶା କରାଯାଇପାରେ ?

□□□

# ମୃତ୍ୟୁ କ'ଣ ?

ଅନେକଙ୍କର ଧାରଣା ଥାଏ ଯେ, ମରିଗଲେ ମଣିଷ ସଂସାରରୁ ଲୋପ ପାଇଯାଏ, କିନ୍ତୁ ପ୍ରକୃତରେ ମୃତ୍ୟୁ ଏକ ସ୍ଥାନର ପରିବର୍ତ୍ତନ ମାତ୍ର । ମୃତ୍ୟୁ ଦ୍ୱାରା ମଣିଷର ଅସ୍ତିତ୍ୱ ସମ୍ପୂର୍ଣ୍ଣ ଲୋପ ପାଇଯାଏ ନାହିଁ । ଜୀବ କେବଳ ଇହଲୋକ ତ୍ୟାଗ କରେ । ଆତ୍ମା ଶରୀର ତ୍ୟାଗ କରି ଅନ୍ୟ ଏକ ଲୋକକୁ ସ୍ଥାନାନ୍ତରିତ ହୁଏ । ମନୁଷ୍ୟ ଆତ୍ମାଲୋକରୁ ମାତୃଗର୍ଭକୁ ଆସେ । ମାତୃଗର୍ଭରୁ ସେ ମର୍ତ୍ତ୍ୟଲୋକରେ ପାଦ ଦିଏ । ମର୍ତ୍ତ୍ୟଲୋକ ତ୍ୟାଗ କଲାପରେ ସେ ଅନ୍ୟ ଏକ ଲୋକରେ ଅବସ୍ଥାନ କରିବ, ଯାହାକୁ ଆରବୀ ଭାଷାରେ 'ବରଜଖ' କୁହାଯାଏ । ଓଡ଼ିଆ ଭାଷାରେ ଏହାକୁ 'ମୃତ୍ୟୁଲୋକ' କହନ୍ତି । ସୃଷ୍ଟିର ପ୍ରଳୟ ପର୍ଯ୍ୟନ୍ତ ସେ ମୃତ୍ୟୁଲୋକରେ ରହିବ । ପ୍ରଳୟ ପରେ ମନୁଷ୍ୟ ପରଲୋକରେ ପ୍ରବେଶ କରିବ, ଯାହାକୁ ଆରବୀ ଭାଷାରେ 'ଆଖିରତ୍' କୁହାଯାଏ । ଜଣେ ବ୍ୟକ୍ତିକୁ କବର ଦିଆଯାଉ, ପୋଡ଼ି ଦିଆଯାଉ ବା ତାକୁ ବାଘ ଖାଇଯାଉ, ତା' ଆତ୍ମା ଅବଶ୍ୟ ପରଲୋକରେ ପ୍ରବେଶ କରିବ । ଶରୀର ନଷ୍ଟ ହୋଇଯାଏ, କିନ୍ତୁ ଆତ୍ମା ଅବିନାଶୀ । ସ୍ୱର୍ଗ ବା ନର୍କରେ ମଧ ତା'ର ବିନାଶ ହେବ ନାହିଁ ।

ମୃତ୍ୟୁର ନିଦ୍ରା ସହ ଅନେକ ସାମଞ୍ଜସ୍ୟ ରହିଛି । ଈଶ୍ୱରୀୟ ବାର୍ତ୍ତାବହ ମହାମାନ୍ୟ ମୁହମ୍ମଦ କହିଛନ୍ତି ଯେ, ''ନିଦ୍ରା ମୃତ୍ୟୁର ଭଉଣୀ'' । ଶୋଇବା ଓ ମରିବା ମଧରେ ତଫାତ୍ ଏତିକି ଯେ, ଶୋଇଥିବା ଅବସ୍ଥାରେ ଆମ ଶରୀରର ଆତ୍ମା ସହ ସମ୍ପର୍କ ରହିଥାଏ, କିନ୍ତୁ ମୃତ୍ୟୁ ହୋଇଗଲେ ଏହି ସମ୍ପର୍କ ବିଚ୍ଛିନ୍ନ ହୋଇଯାଏ ।

ଆମେ ଦେଖୁ ଯେ, ଶୋଇଥିବା ବ୍ୟକ୍ତିଟିର ଅବସ୍ଥା ପ୍ରାୟ ଏକ ଶବ ଭଳି ଥାଏ । ଦେଖିବା, ଶୁଣିବା, ବୁଝିବା ବା କିଛି କରିବାର ସାମର୍ଥ୍ୟ ସେ ସମୟରେ ପ୍ରତ୍ୟାହାର କରିନିଆଯାଏ । ମଣିଷକୁ ସ୍ୱୟଂ ନିଜର ମଧ କୌଣସି ଖବର ରହେନାହିଁ । ଯଦି ଈଶ୍ୱର ଚାହାନ୍ତେ, ଆମେ ଚିରଦିନ ପାଇଁ ଶୋଇପଡ଼ନ୍ତୁ, ଯେମିତି ଅନେକ ଲୋକ ଏପରି ଶୁଅନ୍ତି ଯେ ଆଉ ଉଠନ୍ତି ନାହିଁ ।

କିନ୍ତୁ ଈଶ୍ୱର ମୃତ୍ୟୁର ନିର୍ଦ୍ଧାରିତ ସମୟ ପର୍ଯ୍ୟନ୍ତ ପ୍ରତି ନିଦ୍ରା ପରେ ଆମକୁ ଜୀବଦାନ କରନ୍ତି । ଶୋଇବା ଏବଂ ଶୋଇସାରି ଉଠିବା ମୃତ୍ୟୁ ପରେ ପୁନର୍ଜୀବିତ ହେବାର ଗୋଟିଏ ନମୁନା ବୋଲି ବର୍ଣ୍ଣନା କରି ପବିତ୍ର କୁର୍‌ଆନ କହିଛି :

"ଏବଂ ସେ ହିଁ ରାତ୍ରିକାଳରେ ତୁମ ଆତ୍ମାକୁ ହରଣ କରିନିଅନ୍ତି ଏବଂ ତୁମ୍ଭେମାନେ ଦିନରେ ଯାହାକିଛି କର, ତାହା ଜାଣନ୍ତି; ପୁଣି ତୁମମାନଙ୍କୁ (ଦିନରେ) ଜାଗ୍ରତ କରିଦିଅନ୍ତି ଯେପରିକି ନିର୍ଦ୍ଧାରିତ ଜୀବନକାଳ ପୂର୍ଣ୍ଣ ହେବ । ପୁଣି ତୁମ୍ଭେମାନେ ତାଙ୍କରି ନିକଟକୁ ଫେରିଯିବ ଏବଂ ସେ ତୁମକୁ ଜଣାଇଦେବେ ଯେ, ତୁମେମାନେ କ'ଣ କରୁଥିଲ ।"

କୁର୍‌ଆନ ୬ : ୬୦

ଏହି କାରଣ ଯୋଗୁଁ ପ୍ରତ୍ୟେକ ମୁସଲମାନ୍‌କୁ ଶୋଇବା ପୂର୍ବରୁ ନିମ୍ନ ପ୍ରାର୍ଥନା କରିବାର ଶିକ୍ଷା ଦିଆଯାଇଛି :

"ହେ ଅଲ୍ଲାହ ! ତୁମ ନାମ ନେଇ ମୁଁ ମରେ ଏବଂ ତୁମରି ନାମ ନେଇ ଜୀବିତ ହୁଏ ।"

ନିଦରୁ ଉଠିଲାପରେ ସେ ଏହି ପ୍ରାର୍ଥନା କରେ :

"ସମସ୍ତ ପ୍ରଶଂସା ଅଲ୍ଲାହଙ୍କ ପାଇଁ ଯିଏ ମୃତ୍ୟୁପରେ ଆମକୁ ଜୀବନ ଦେଲେ ଏବଂ ଆମେ ତାଙ୍କରି ନିକଟକୁ ଫେରିଯିବା ।"

ଏହି ପ୍ରାର୍ଥନା ମଣିଷକୁ ତା' ମୃତ୍ୟୁକଥା ପ୍ରତିଦିନ ସ୍ମରଣ କରାଉଥାଏ ।

କେହି ଜଣେ ସୁନ୍ଦର କଥାଟିଏ କହିଛନ୍ତି–

"ଯଦି ମୃତ୍ୟୁ ପ୍ରତି ସନ୍ଦେହ, ତେବେ ଶୋଇପଡ଼ କାହିଁକି ? ଆଉ ଯଦି ମୃତ୍ୟୁ ପରେ ପୁନର୍ଜୀବିତ ହେବାରେ ସନ୍ଦେହ, ତେବେ ଶୋଇସାରିଲା ପରେ ଉଠିଯାଅ କାହିଁକି ?"

ସାଧାରଣତଃ ମରିବାକୁ କେହି ପସନ୍ଦ କରନ୍ତି ନାହିଁ । ମୃତ୍ୟୁ ନାଁ ଶୁଣିଲେ ଯେତେ ବଡ଼ ଶକ୍ତିମାନ ବ୍ୟକ୍ତି ହେଉ ନା କାହିଁକି ଆତଙ୍କିତ ହୋଇପଡ଼େ ।

ସଂସାରର ମୋହ ଓ ଇନ୍ଦ୍ରିୟ ଭୋଗଲାଳସା ଯୋଗୁଁ ମଣିଷ ସର୍ବଦା ବଞ୍ଚିରହିବାକୁ ଚାହେଁ । ନିଜର କୁକର୍ମ ମଧ୍ୟ ମରିବା ପାଇଁ ମନରେ ଭୟ ଜାତ କରେ । ଏହାଛଡ଼ା ମୃତ୍ୟୁଯନ୍ତ୍ରଣା ମଧ୍ୟ ଏହାର ଅନ୍ୟତମ କାରଣ ।

କିନ୍ତୁ ଯୌବନ ଓ ବାର୍ଦ୍ଧକ୍ୟ ଭଳି ମୃତ୍ୟୁ ଏକ ସାଧାରଣ ପ୍ରାକୃତିକ ପ୍ରକ୍ରିୟା । ଏହା ଅବଶ୍ୟ ଆସିବ । ପବିତ୍ର କୁର୍‌ଆନ କହେ :

> ''ତୁମେ ଯେଉଁଠି ଥାଅନା କାହିଁକି, ସୁଦୃଢ଼ ଦୁର୍ଗ ମଧ୍ୟରେ ସୁରକ୍ଷିତ ଥିଲେ ମଧ୍ୟ ମୃତ୍ୟୁ ତୁମକୁ କବଳିତ କରିନେବ ।''
>
> **କୁର୍‌ଆନ ୪ : ୭୮**

ତେଣୁ ଯେଉଁ ଘଟଣା ନିଶ୍ଚିତ ଘଟିବ, ତାକୁ ମନେରଖିବା ଉଚିତ ଏବଂ ପରବର୍ତ୍ତୀ ଜୀବନ ପାଇଁ ପ୍ରସ୍ତୁତ ହେବା ଉଚିତ । ଦୈନିକ ମୃତ୍ୟୁର ଧ୍ୟାନ ଓ ଚିନ୍ତନ ଧର୍ମନିଷ୍ଠ ହେବାରେ ସାହାଯ୍ୟ କରେ ।

ଆପଣ ଅନୁଭବ କରିଥିବେ, ଆମର କୌଣସି ନିକଟ ସମ୍ପର୍କୀୟର ମୃତ୍ୟୁ ଆମ ହୃଦୟରେ ଏଭଳି ଗଭୀର ପ୍ରଭାବ ପକାଏ ଯେ, ହଠାତ୍ ସଂସାର ପ୍ରତି ଯେପରି ଏକ ବିତୃଷ୍ଣା ଭାବ ଆସିଯାଏ । ଅନେକ ଦିନ ପର୍ଯ୍ୟନ୍ତ ମନରେ କୌଣସି ଉପଭୋଗର ଇଚ୍ଛା ରହେନାହିଁ । ଯଦି ଆମେ ନିଜ ମୃତ୍ୟୁକୁ ଦୈନିକ ସ୍ମରଣ କରିବା, ତେବେ ଏହା ଆମକୁ ଅନେକ ପାପରୁ ବିରତ ରହିବାରେ ନିଶ୍ଚୟ ସାହାଯ୍ୟ କରିବ ।

ଯେଉଁ ସଂସାରରେ ଆମେ ସବୁଦିନ ରହିପାରିବା ନାହିଁ ଏବଂ ଯେଉଁ ଧନସମ୍ପତ୍ତିକୁ ସାଙ୍ଗରେ ନେଇପାରିବା ନାହିଁ, ତା' ପ୍ରତି ଏତେ ଲୋଭ କାହିଁକି ? ବରଂ ଯେଉଁଠି ଆମେ ଚିରଦିନ ଲାଗି ରହିବା ଏବଂ ଯେଉଁଟି ଆମର ପ୍ରକୃତ ଘର, ସେହି ପରଲୋକର ସୁଖଶାନ୍ତି ପାଇଁ ପ୍ରୟାସ କରିବା ଉଚିତ । ଅତିଥିଶାଳାର ସୌନ୍ଦର୍ଯ୍ୟରେ ମୋହିତ ହୋଇ ତାକୁ ନିଜ ଘର ଭାବିନେବା ଏବଂ ନିଜର ପ୍ରକୃତ ଘରକୁ ଭୁଲିଯିବା ବିଜ୍ଞତାର ପରିଚୟ ନୁହେଁ ।



# ପରଲୋକ

ପରଲୋକ ଯଦିଓ ଏକ ଜଣାଶୁଣା ଶବ୍ଦ, ତଥାପି ଏହାର ଅସ୍ତିତ୍ୱ ବିଷୟରେ ଅନେକ ଆଶ୍ଚର୍ଯ୍ୟ ହୁଅନ୍ତି । ସତେଯେପରି 'ପରଲୋକ'ର ଅସ୍ତିତ୍ୱ ଏକ ଅସମ୍ଭବ କଥା । କିନ୍ତୁ ପ୍ରକୃତରେ ଏହି ଆଶ୍ଚର୍ଯ୍ୟମୟ ବ୍ରହ୍ମାଣ୍ଡରେ ପରଲୋକର ଅବସ୍ଥିତି ମଣିଷକୁ ଆଶ୍ଚର୍ଯ୍ୟ ଲାଗୁଥିଲେ ମଧ୍ୟ ଏହା ଆଦୌ ଏକ ଅସମ୍ଭବ କଥା ନୁହେଁ । ଏହା ଅନ୍ୟ ଏକ ଲୋକ ଯେଉଁଥିରେ ମନୁଷ୍ୟ ଭୂଲୋକ ପରେ ପ୍ରବେଶ କରିବ ।

ଏଇ ଦୁନିଆରେ ଅନେକ ଜିନିଷ ସମ୍ଭବ ହୋଇଥିବା ଆମେ ଦେଖୁ, ଯାହା ପୂର୍ବଯୁଗର ଲୋକମାନଙ୍କୁ ଅସମ୍ଭବ ଲାଗୁଥିଲା । ଆଗକୁ ସମ୍ଭାବ୍ୟର ଜଗତ ଆହୁରି ଅଛି । ଆଜି ଆମେ ଟିଭି, କମ୍ପ୍ୟୁଟର୍, ସେଲଫୋନ୍, ଇଣ୍ଟରନେଟ୍ ଓ ମହାକାଶଯାନର କରାମତି ଦେଖୁଛୁ । କିନ୍ତୁ ଯଦି ହଜାର ବର୍ଷ ପୂର୍ବର ଲୋକମାନଙ୍କୁ ଏଗୁଡ଼ିକ ବିଷୟରେ ଖବର ଦିଆଯାଇଥାଆନ୍ତା, ବୋଧହୁଏ ସେମାନଙ୍କ ବୁଦ୍ଧିରେ ପଶନ୍ତା ନାହିଁ । ସେମାନେ ବିସ୍ମୟ ପ୍ରକାଶ କରନ୍ତେ :

— ''ଆଶ୍ଚର୍ଯ୍ୟ କଥା ! ଗୋଟିଏ ସ୍ଥାନରେ ବସି ଗୋଟିଏ ଛୋଟ ଯନ୍ତ୍ର ଦ୍ୱାରା ସାରା ଦୁନିଆର ହାଲଚାଲ କିପରି ଦେଖିହେବ ?''

— ''ହଜାର ହଜାର ମାଇଲ ଦୂରରେ ରହି କାହା ସହିତ କିପରି କଥାବାର୍ତ୍ତା କରିପାରିବ ?''

— ''କ୍ୱିଣ୍ଟାଲ୍ କ୍ୱିଣ୍ଟାଲ୍ ଓଜନର ଲୁହା ଶତାଧିକ ଯାତ୍ରୀଙ୍କୁ ଧରି ସାଗର ପର୍ବତ ଡେଇଁ ଆକାଶରେ କିପରି ବା ଉଡ଼ିପାରିବ ?''

ଏଗୁଡ଼ିକ ସେମାନଙ୍କୁ ନିଶ୍ଚିତ ବିସ୍ମିତ କରନ୍ତା; କିନ୍ତୁ ଏହା ଆଜି ସତ୍ୟ । ମାତ୍ର ବାରମ୍ବାର ଦେଖିଶୁଣି ଅଭ୍ୟସ୍ତ ହୋଇଯାଇଥିବାରୁ ଆମକୁ ଏଗୁଡ଼ିକ ଅସମ୍ଭବ ଲାଗୁନାହିଁ ।

ଯଦି ମା' ଗର୍ଭରେ ଥିବା ଶିଶୁଟିକୁ ଖବର ଦିଆଯାଇପାରନ୍ତା ଯେ, "ତୁ ଏ ଛୋଟ କୋଠରୀ ଛାଡ଼ି ଖୁବ୍ ଶୀଘ୍ର ଏହାଠାରୁ କୋଟି କୋଟି ଗୁଣ ବଡ଼ ଏକ ନୂଆ ଦୁନିଆରେ ପ୍ରବେଶ କରିବୁ, ଯାହାକୁ ପୃଥିବୀ କୁହାଯାଏ । ସେଠି ବିଶାଳ ଧରିତ୍ରୀ ଓ ସୀମାହୀନ ଆକାଶ ଦେଖିବୁ । ସେ ଧରିତ୍ରୀ ବୃକ୍ଷ, ଜଙ୍ଗଲ, ନଈ, ସମୁଦ୍ର ଓ ପାହାଡ଼ରେ ଭରା । ଆକାଶ ସୂର୍ଯ୍ୟ, ଚନ୍ଦ୍ର ଓ ତାରକାମାନଙ୍କ ଦ୍ୱାରା ସୁସଜ୍ଜିତ । ଅସଂଖ୍ୟ ନରନାରୀ ସେଠାରେ ବସବାସ କରନ୍ତି । ବିଭିନ୍ନ ପ୍ରକାରର ଜୀବଜନ୍ତୁ, ରଙ୍ଗବେରଙ୍ଗର ପଶୁପକ୍ଷୀ ମଧ୍ୟ ବାସ କରନ୍ତି । ନାନା ପ୍ରକାରର ସୁସ୍ୱାଦୁ ଖାଦ୍ୟପେୟ ସହ ମନୋରଞ୍ଜନର ଅନେକ ସାଧନ ସେଠାରେ ଅଛି । ଏହାବ୍ୟତୀତ ସେଠି ବିଭିନ୍ନ ପ୍ରକାରର ଦୁଃଖଯନ୍ତ୍ରଣା ମଧ୍ୟ ରହିଛି । ବନ୍ୟା, ବାତ୍ୟା ଓ ଦୁର୍ବିପାକ ଆସେ । ରୋଗ ବା ଦୁର୍ଘଟଣାରେ ଅସଂଖ୍ୟ ମରନ୍ତି । ବୋମା ବିସ୍ଫୋରଣରେ ବଡ଼ ବଡ଼ ସହର ଧ୍ୱଂସ ମଧ୍ୟ ହୋଇଯାଏ । ସେ ଦୁନିଆରେ ତୋ ଶରୀର ସାଢ଼େ ପାଞ୍ଚଫୁଟ ହେବ, ସୁନ୍ଦର ପତ୍ନୀ ଓ ସନ୍ତାନ ହେବେ । ସୁନ୍ଦର ଘର ହେବ, ଯେଉଁଥିରେ ବିଜୁଳି ଆଲୁଅ ଓ ଏୟାର୍‌କଣ୍ଡିସନର୍ ଲାଗିଥିବ । ତୁ ମୋବାଇଲ୍ ଫୋନ୍‌ରେ ଯାହା ସହ ଚାହିଁବୁ କଥାବାର୍ତ୍ତା କରିପାରିବୁ ଏବଂ ନିଜ ଘରେ ବସି ସାରା ଦୁନିଆର ହାଲଚାଲ ନିଜ ଆଖିରେ ଦେଖିପାରିବୁ । ତୁ ଘଣ୍ଟାଙ୍କ ମଧ୍ୟରେ ଆକାଶ ମାର୍ଗରେ ଶହ ଶହ ମାଇଲ ଉଡ଼ିପାରିବୁ ।

ଏଗୁଡ଼ିକ ସବୁ ଭୂଲୋକରେ ତୋ ପାଇଁ ଅପେକ୍ଷା କରିଛି, ଆଉ ତୁ ଖୁବ୍ ଶୀଘ୍ର ସେଠି ପହଞ୍ଚିବୁ ।"

ଯଦି ଶିଶୁଟି କୌଣସି ପ୍ରକାରରେ ଏସବୁ ଶୁଣିପାରେ, ତାକୁ ସବୁ କଥା ଅଦ୍ଭୁତ ଲାଗିବ । ମଣିଷ ଅବସ୍ଥା ସଂସାରରେ ଠିକ୍ ସେହିପରି । ସବୁ ଦିବ୍ୟଗ୍ରନ୍ଥ ଏହି ବାର୍ତ୍ତା ଦେଇଛନ୍ତି ଯେ, ଇହଲୋକ ପରେ ତୁମେ ପରଲୋକକୁ ଯିବ । ମର୍ତ୍ତ୍ୟଲୋକଠାରୁ ଏହା ଢେର୍ ବଡ଼ । ସେଠି ସ୍ୱର୍ଗ ଓ ନର୍କ ନାମକ ସ୍ଥାନ ଅଛି । ସ୍ୱର୍ଗ ପରମ ଆନନ୍ଦଦାୟକ ସ୍ଥାନ, ଯେଉଁଠି କୌଣସି ଦୁଃଖ-ଯନ୍ତ୍ରଣା ବା ରୋଗ-ବ୍ୟାଧି ନାହିଁ । ଜନ୍ମ, ମୃତ୍ୟୁ ବା ବାର୍ଦ୍ଧକ୍ୟ ମଧ୍ୟ ନାହିଁ । ପୁଣ୍ୟବନ୍ତମାନଙ୍କ ପାଇଁ ସେଠାରେ ବିଭିନ୍ନ ପ୍ରକାର ସୁସ୍ୱାଦୁ ଖାଦ୍ୟ, ବସ୍ତ୍ର ଏବଂ ସ୍ୱର୍ଣ୍ଣ ଓ ରୌପ୍ୟ ନିର୍ମିତ ସୁରମ୍ୟ ପ୍ରାସାଦ ସହ ସବୁ ସୁଖର ଅସରନ୍ତି ଭଣ୍ଡାର ପ୍ରତୀକ୍ଷା କରୁଛି । ଅନ୍ୟ ପକ୍ଷରେ ପାପୀମାନଙ୍କ ପାଇଁ ବିଭିନ୍ନ ପ୍ରକାରର ଦୁଃଖ-କଷ୍ଟ ଓ ନର୍କ ଯନ୍ତ୍ରଣା ମଧ୍ୟ ଅପେକ୍ଷା କରିଛି । କିନ୍ତୁ ବିଚିତ୍ର ବସ୍ତୁଗୁଡ଼ିକ ସହ ଏକ ନୂଆ ଦୁନିଆକୁ ମଣିଷ ସହଜରେ ଗ୍ରହଣ କରିପାରୁ ନାହିଁ ।

ଯେପରି ଗର୍ଭରେ ଥିବା ଶିଶୁଟିର ନ ବୁଝିବା ସତ୍ତ୍ୱେ ମଧ ତା'ର ସଂସାର ମଧକୁ ଆସିବା ଏକ ସତ୍ୟ ଥିଲା, ସେହିପରି ଇହଲୋକର ମନୁଷ୍ୟ ନ ବୁଝିପାରିଲେ ମଧ ତା'ର ପରଲୋକରେ ପ୍ରବେଶ କରିବା ଏକ ଅଟଳ ସତ୍ୟ ।

ଏଥିରେ କୌଣସି ସନ୍ଦେହ ନାହିଁ ଯେ, ବୁଦ୍ଧି ଓ ବିବେକ ସ୍ରଷ୍ଟାଙ୍କର ମନୁଷ୍ୟକୁ ଏକ ଅପୂର୍ବ ଦାନ । ଏହା ସାହାଯ୍ୟରେ ମଣିଷ ଠିକ୍ ଭୁଲ୍ ମଧରେ ପ୍ରଭେଦ କରିପାରେ ଏବଂ ଯେଉଁ କ୍ଷେତ୍ରରେ ବାହ୍ୟ ଇନ୍ଦ୍ରିୟ, ଯଥା–ଆଖି, କାନ, ନାକ ଇତ୍ୟାଦି କାମ କରିପାରନ୍ତି ନାହିଁ, ସେଠାରେ ବୁଦ୍ଧି ପ୍ରୟୋଗ କରି ସେ ଅନେକ କଥା ଜାଣିପାରେ । କିନ୍ତୁ ଅନ୍ୟ ଇନ୍ଦ୍ରିୟଗୁଡ଼ିକ ଭଳି ବୁଦ୍ଧିର ଶକ୍ତି ମଧ ସୀମିତ । ଏହା ଏକ ନିର୍ଦ୍ଦିଷ୍ଟ ସୀମା ପର୍ଯ୍ୟନ୍ତ କାର୍ଯ୍ୟ କରିପାରେ । ଯେମିତି ଆଖିର କାମ ଦେଖିବା; କିନ୍ତୁ ଆଖି ସାହାଯ୍ୟରେ ମଣିଷ ସବୁକିଛି ଦେଖିପାରିବ ନାହିଁ ବା କାନ ଅଛି ବୋଲି ସବୁ ଶବ୍ଦ ଶୁଣିପାରିବ ନାହିଁ । ସେହିପରି ବୁଦ୍ଧି ଦ୍ୱାରା ସବୁକିଛି ଜାଣିପାରିବ ନାହିଁ ।

ଉଦାହରଣ ସ୍ୱରୂପ, କେହି ଯଦି ଆମକୁ ଗୋଟିଏ ଔଷଧ କ୍ୟାପ୍‌ସୁଲ ଦେଖାଇ ପଚାରେ ଯେ, ଏଇଟା କ'ଣ ବା ଏହା ଦେଖିବାକୁ କିପରି, ତେବେ ଆମେ ଅତି ସହଜରେ କହିପାରିବା ଯେ, ଏହା ଗୋଟିଏ କ୍ୟାପ୍‌ସୁଲ, ଏହାର ଆକାର ସିଲିଣ୍ଡର୍ ଭଳି ଏବଂ ରଙ୍ଗ ନାଲି ଇତ୍ୟାଦି । ଯଦି ପ୍ରଶ୍ନ କରାଯାଏ ଯେ, ଏଇଟି ଆପେ ଆପେ ତିଆରି ହୋଇଛି ବା ଏହାର କେହି ନିର୍ମାତା ଅଛି ? ତେବେ ଏଠି ଆମ ଆଖି, କାନ, ନାକ, ହାତ କିଛି କାମ କରିବ ନାହିଁ । ଏଠି ଆମେ ବୁଦ୍ଧି ପ୍ରୟୋଗ କରି ଉତ୍ତର ଦେଉ ଯେ, ଏତେ ସୁନ୍ଦର ଡିଜାଇନ୍‌ରେ କୌଣସି ରୋଗର ଚିକିତ୍ସା ପାଇଁ ତିଆରି କରାଯାଇଥିବା କ୍ୟାପ୍‌ସୁଲ ଖଣ୍ଡକ କଦାପି ଆପେ ଆପେ ନିର୍ମିତ ହୋଇନଥିବ । ନିଶ୍ଚୟ ଏହାର କେହି ନିର୍ମାତା ଅଛି । କିନ୍ତୁ ଏହାପରେ ଯଦି ଆମକୁ ଆଉ ଗୋଟିଏ ପ୍ରଶ୍ନ ପଚରାଯାଏ ଯେ, କ୍ୟାପ୍‌ସୁଲଟିର ଉପଯୋଗିତା କ'ଣ ବା ଏହା କିପରି ବ୍ୟବହୃତ ହେବ ? ତେବେ ଏଠି ଆମ ବୁଦ୍ଧି ମଧ କାମ କରିବ ନାହିଁ । ଏଠାରେ ଆମକୁ ନିର୍ମାତାଙ୍କ ମାର୍ଗଦର୍ଶନର ଆବଶ୍ୟକତା ପଡ଼େ, ଯାହା ଜଣେ ଡାକ୍ତରଙ୍କ ମାଧମରେ ଆମେ ଜାଣୁ । ତେଣୁ ଏଠି ବୁଦ୍ଧି ପ୍ରୟୋଗ କରି ଭଲ ଡାକ୍ତରଟି ବାଛିନେବା ହିଁ ବୁଦ୍ଧିମତ୍ତା । ଏଭଳି କ୍ଷେତ୍ରରେ ନିର୍ମାତାଙ୍କ ଉପଦେଶକୁ ଉପେକ୍ଷା କରି ନିଜ ବୁଦ୍ଧି ଅନୁସାରେ ଔଷଧର ବ୍ୟବହାର ବୁଦ୍ଧିର ଦୁରୁପଯୋଗ ଏବଂ ଏହା ବିପଜ୍ଜନକ ମଧ ହୋଇପାରେ ।

କିନ୍ତୁ ଅନେକ ଲୋକ ବୁଦ୍ଧିର ସୀମା ଓ ସାମର୍ଥ୍ୟ ବିଷୟରେ ଜାଣନ୍ତି ନାହିଁ । ସେମାନଙ୍କର ଧାରଣା ଯେ ବୁଦ୍ଧି ମଣିଷକୁ ବାଟ ଦେଖାଇବା ପାଇଁ ଯଥେଷ୍ଟ । ତେଣୁ ସେମାନେ ବୁଦ୍ଧିର ପ୍ରୟୋଗ ଏପରି କ୍ଷେତ୍ରରେ କରନ୍ତି, ଯେଉଁଠି ସେ ଆଦୌ କାର୍ଯ୍ୟ କରେନାହିଁ । ଏହା ସେମାନଙ୍କୁ ପଥଭ୍ରଷ୍ଟ କରିଦିଏ ।

ବୁଦ୍ଧି ଦ୍ୱାରା ମଣିଷ ରୋଗର ଲକ୍ଷଣ ଦେଖି ରୋଗୀକୁ ଜାଣିପାରିବ, କିନ୍ତୁ ଏହାର ଚିକିତ୍ସାର ବିବରଣୀ ବୁଦ୍ଧି ଦ୍ୱାରା ଜାଣିପାରିବ ନାହିଁ । ବୁଦ୍ଧି ପ୍ରୟୋଗ କରି ଈଶ୍ୱରଙ୍କ ଅସ୍ତିତ୍ୱ ଉପଲବ୍ଧି କରିପାରିବ, ସେ ଏକ ବୋଲି ମଧ ଜାଣିପାରିବ; କିନ୍ତୁ ଈଶ୍ୱର ଦେଖିବାକୁ କିପରି, ତାଙ୍କର ସ୍ୱରୂପ କ'ଣ, ତାଙ୍କର ବିଧିବିଧାନ କ'ଣ, ତାଙ୍କ ସୃଷ୍ଟିରେ ଆଉ କ'ଣ ସବୁ ଅଛି–ଏସବୁ ଜାଣିପାରିବ ନାହିଁ ।

ସେହିପରି ସେ ବୁଦ୍ଧି ଦ୍ୱାରା ମୃତ୍ୟୁ ପରେ ଉତ୍ତରଦାୟିତ୍ୱକୁ ଉପଲବ୍ଧି କରିପାରିବ; କିନ୍ତୁ ପରଲୋକର ବିଶଦ ବିବରଣୀ, ସ୍ୱର୍ଗ ଓ ନର୍କର ବାସ୍ତବତା ବୁଦ୍ଧିବଳରେ ଜାଣିବା ସମ୍ଭବ ନୁହେଁ । ଏଥିପାଇଁ ଈଶ୍ୱର ଆଉ ଗୋଟିଏ ବ୍ୟବସ୍ଥା କରିଛନ୍ତି, ଯାହାକୁ ଦିବ୍ୟଜ୍ଞାନ କୁହାଯାଏ । ଏହି ଦିବ୍ୟଜ୍ଞାନ ଈଶ୍ୱରଙ୍କ ଧର୍ମଦୂତ ଓ ଧର୍ମଗ୍ରନ୍ଥ ମାଧ୍ୟମରେ ହିଁ ଆସେ । ଯେଉଁ କ୍ଷେତ୍ରରେ ବୁଦ୍ଧି କାମ କରେନାହିଁ, ସେଠାରେ ଦିବ୍ୟଜ୍ଞାନ ମାର୍ଗଦର୍ଶନ କରେ । ଯଦି ମନୁଷ୍ୟ ନିଜ ବୁଦ୍ଧିବଳରେ ଏସବୁର ରହସ୍ୟ ଜାଣିପାରନ୍ତା, ତେବେ ଧର୍ମଗ୍ରନ୍ଥ ବା ଧର୍ମଦୂତମାନଙ୍କର ଆବଶ୍ୟକତା ନଥିଲା । ବିଭିନ୍ନ ଯୁଗରେ ଈଶ୍ୱରଙ୍କ ଦ୍ୱାରା ମାନବଜାତି ପାଇଁ ଦିବ୍ୟଜ୍ଞାନର ବ୍ୟବସ୍ଥା ଏହାର ସ୍ପଷ୍ଟ ପ୍ରମାଣ ଦିଏ ଯେ, ମନୁଷ୍ୟର ବୁଦ୍ଧି ଯଥେଷ୍ଟ ନୁହେଁ ଏବଂ ତା'କୁ ଦିବ୍ୟ ମାର୍ଗଦର୍ଶନର ଆବଶ୍ୟକତା ଅଛି ।



# ପୁନର୍ଜୀବନ

ଇସ୍‌ଲାମର ଶିକ୍ଷା ଅନୁସାରେ ପୁନର୍ଜୀବନ ଅର୍ଥ ପୁନଃ-ଜୀବନ ବା ଆଉଥରେ ଜୀବନଲାଭ କରିବା । ଏହାର ଅର୍ଥ ମାତୃଗର୍ଭରୁ ଜନ୍ମ ନୁହେଁ, ବରଂ ଏହାର ଅର୍ଥ ପୁନର୍ବାର ଜୀବନ୍ୟାସ । ଜୀବ ଯେଉଁ ଶରୀରରେ ଇହଲୋକ ଛାଡ଼ିଥିଲା, ସେହି ଶରୀର ଧାରଣ କରି ପ୍ରଳୟ ପରେ ପୁନର୍ଜୀବିତ ହେବ ।

ଅନେକ ଆଶ୍ଚର୍ଯ୍ୟ ହୁଅନ୍ତି ଯେ, ହାଡ଼ମାଂସ ମାଟିରେ ମିଶିଗଲା ପରେ ପୁଣି ପୂର୍ବ ରୂପକୁ ଫେରିବା କିପରି ସମ୍ଭବ ? ପ୍ରକୃତରେ କୌଣସି ପଦାର୍ଥ ନଷ୍ଟ ହୋଇଗଲେ, ତା' ଅସ୍ତିତ୍ୱ ସଂସାରରୁ ସମ୍ପୂର୍ଣ୍ଣ ଲୋପ ପାଇଯାଏ ନାହିଁ । ବରଂ ଏହା ଅନ୍ୟ ଏକ ରୂପରେ ରୂପାନ୍ତରିତ ହୋଇଯାଏ । ସେହିପରି ମୃତ୍ୟୁ ପରେ ମଣିଷର ପାର୍ଥିବ ଶରୀର ଅବଶ୍ୟ ନଷ୍ଟ ହୋଇଯାଏ; କିନ୍ତୁ ଯେଉଁ ମୌଳିକ ଉପାଦାନଗୁଡ଼ିକ ଦ୍ୱାରା ଏହା ଗଢ଼ାଯାଇଥିଲା, ସେଗୁଡ଼ିକ ଭୂମଣ୍ଡଳରୁ ଲୋପ ପାଇଯାଏ ନାହିଁ । ମୃତ୍ୟୁ ପରେ ମଣିଷ ଯେ ସମ୍ପୂର୍ଣ୍ଣ ନଷ୍ଟ ହୁଏନାହିଁ, ଏହାର ସଙ୍କେତ ଦେଇ ପବିତ୍ର କୁର୍‌ଆନରେ ସ୍ରଷ୍ଟା କହନ୍ତି :

> "ମାଟି ସେମାନଙ୍କ ଶରୀରକୁ କେତେ କ୍ଷୟ କରେ, ତାହା ଆମ୍ଭେ ଜାଣୁ ।"
>
> କୁର୍‌ଆନ ୫୦ : ୪

ମାନବ ଶରୀର କାରବୋନ୍, କ୍ୟାଲସିୟମ୍, ସୋଡ଼ିୟମ୍, ପୋଟାସିୟମ୍, ଆଇରନ୍, ଫସ୍‌ଫରସ୍, ହାଇଡ୍ରୋଜେନ୍, ନାଇଟ୍ରୋଜେନ୍ ଓ ଅକ୍ସିଜେନ୍ ଆଦି କେତୋଟି ନିର୍ଜୀବ ଉପାଦାନରେ ଗଢ଼ା । ଏହି ନିର୍ଜୀବ ଉପାଦାନଗୁଡ଼ିକ ସାହାଯ୍ୟରେ ଆମକୁ ଜୀବନ୍ତ ମଣିଷଟିଏ କରି ଗଢ଼ି ଦିଆଯାଇଛି ଏବଂ ଏହିଭଳି ମଣିଷ ଗଢ଼ିବାର କାର୍ଯ୍ୟ କୋଟି କୋଟି ମାଆଙ୍କ ଗର୍ଭରେ ଅବିରାମ ଗତିରେ ଦିନରାତି ଚାଲିଛି । ତେଣୁ ଏହି ମୌଳିକ ଉପାଦାନଗୁଡ଼ିକୁ ପୁନରୁଦ୍ଧାର କରି ପୁଣିଥରେ ମଣିଷକୁ ଗଢ଼ିଦେବା ବିଶ୍ୱସ୍ରଷ୍ଟାଙ୍କ ପକ୍ଷରେ ଆଦୌ କୌଣସି କଠିନ କାର୍ଯ୍ୟ ନୁହେଁ । ଯିଏ ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ନକ୍ଷତ୍ର ସୃଷ୍ଟି କରିଛନ୍ତି, ତାଙ୍କ ପାଇଁ

ମଣିଷଟିଏ ଗଢ଼ିଦେବା କ'ଣ ବଡ଼ କଥା ! ଧରିତ୍ରୀ ଓ ଆକାଶମଣ୍ଡଳକୁ ଗଢ଼ିବା ତୁଳନାରେ ଏହା ଏକ ଅତି ସାମାନ୍ୟ କଥା ବୋଲି ବର୍ଣ୍ଣନା କରି କୁର୍‌ଆନ କହିଛି :

''ଆକାଶମଣ୍ଡଳ ଓ ପୃଥିବୀର ସୃଷ୍ଟି ମନୁଷ୍ୟକୁ ସୃଷ୍ଟି କରିବା ତୁଳନାରେ ନିଶ୍ଚିତ ରୂପେ ଅଧିକ ବଡ଼ କାର୍ଯ୍ୟ, କିନ୍ତୁ ଅଧିକାଂଶ ଲୋକ (ଏହା) ଜାଣନ୍ତି ନାହିଁ ।''

କୁର୍‌ଆନ ୪୦ : ୫୭

ଈଶ୍ୱରଙ୍କ ଅସୀମ ଶକ୍ତି ଓ ସାମର୍ଥ୍ୟର ସୁନ୍ଦର ଉଦାହରଣ ଦେଇ କୁର୍‌ଆନ କହିଛି :

''ତୁମ ସମସ୍ତଙ୍କୁ ସୃଷ୍ଟି କରିବା ଓ ପୁନର୍ଜୀବିତ କରିବା (ସ୍ରଷ୍ଟାଙ୍କ ପକ୍ଷରେ) ଜଣକୁ ସୃଷ୍ଟି କରିବା ଓ ପୁନର୍ଜୀବିତ କରିବା ସହ ସମାନ ।''

କୁର୍‌ଆନ ୩୧ : ୨୮

ଯଦି ଆମେ ନିଜ ଜନ୍ମ ବିଷୟରେ ଚିନ୍ତା କରିବା, ତେବେ ଆମ ବୁଦ୍ଧି କେବେହେଲେ ଏହା ଅସ୍ୱୀକାର କରିବ ନାହିଁ ଯେ, ଯିଏ ଟୋପାଏ ଜଳବିନ୍ଦୁରୁ ଏକ ପୂର୍ଣ୍ଣମାନବ ସୃଷ୍ଟି କରି ନିଜ ଅସୀମ ଶକ୍ତି ଓ ଅନନ୍ତ ସାମର୍ଥ୍ୟର ପ୍ରମାଣ ଦେଇ ସାରିଛନ୍ତି, ତାଙ୍କ ପାଇଁ ସେଇ ମଣିଷଟିକୁ ଦ୍ୱିତୀୟଥର ଗଢ଼ିଦେବା ବା ତା' ପୂର୍ବ ସ୍ୱରୂପ ଫେରାଇ ଆଣିବା ଆଦୌ ଏକ ଅସାଧ କାର୍ଯ୍ୟ ନୁହେଁ । ପବିତ୍ର କୁର୍‌ଆନ ଏକଥା ବର୍ଣ୍ଣନା କରି କହିଛି :

''ତାଙ୍କରି ନିକଟକୁ ତୁମ ସମସ୍ତଙ୍କୁ ଫେରିବାକୁ ହେବ; ଏହା ଅଲ୍ଲାହ୍‌ଙ୍କର (ଦୃଢ଼) ପ୍ରତିଶ୍ରୁତି । ନିଃସନ୍ଦେହ, ସେ ସୃଷ୍ଟିର ସୂତ୍ରପାତ କରନ୍ତି ଏବଂ ପୁନର୍ବାର ମଧ୍ୟ ସେ ସୃଷ୍ଟି କରିବେ; ଫଳରେ ଯେଉଁମାନେ ବିଶ୍ୱାସ ରଖନ୍ତି ଓ ସତ୍‌କର୍ମ କରନ୍ତି, ସେମାନଙ୍କୁ ସେ ନ୍ୟାୟର ସହ ପୁରସ୍କୃତ କରିବେ ଏବଂ ଯେଉଁମାନେ ଅବିଶ୍ୱାସ କରିଛନ୍ତି, ସେମାନଙ୍କ ପାଇଁ (ନର୍କରେ) ଫୁଟନ୍ତା ପାଣି ପିଇବାକୁ ମିଳିବ ଏବଂ ସତ୍ୟ ପ୍ରତି ଅବମାନନାର ଫଳସ୍ୱରୂପ ଯନ୍ତ୍ରଣାଦାୟକ ଶାସ୍ତି ମିଳିବ ।''

କୁର୍‌ଆନ ୧୦ : ୪

ଉପରୋକ୍ତ ଦିବ୍ୟବାଣୀରେ ପୁନର୍ଜୀବନର କାରଣ ବର୍ଣ୍ଣନା ହେବା ସହ ଏହା ମଧ୍ୟ ଦାବି କରାଯାଇଛି ଯେ, ଯିଏ ପ୍ରଥମ ଥର ଗଢ଼ିଛି, ସେ ଦ୍ୱିତୀୟଥର ମଧ୍ୟ ଗଢ଼ି ଦେଇପାରେ ।

ଯଦି ଜଣେ ଇଞ୍ଜିନିୟର୍ ଦାବି କରେ ଯେ, ଏଇ କୋଠାଟିକୁ ମୁଁ ତିଆରି କରିଛି ଏବଂ ଏହାକୁ ଭାଙ୍ଗିଭୁଙ୍ଗି ଚୂର୍ଣ୍ଣ କରିଦେଲେ ମଧ୍ୟ ମୁଁ ଆଉ ଥରେ ଏହାର ପୂର୍ବରୂପ ଫେରାଇ ଆଣିବି, ତେବେ ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ଜଣେ ସାମାନ୍ୟ ମଣିଷ ଯାହାର ଶକ୍ତି ଓ ସାମର୍ଥ୍ୟ ଅତି ସୀମିତ, ଯଦି ନିଜେ ଗଢ଼ିଥିବା ବସ୍ତୁକୁ ସମ୍ପୂର୍ଣ୍ଣ ନଷ୍ଟ ହୋଇଯିବା ପରେ ପୂର୍ବରୂପ ଦେବାପାଇଁ ସମର୍ଥ, ତେବେ ତା' ସ୍ରଷ୍ଟା, ସ୍ୱୟଂ ବ୍ରହ୍ମାଣ୍ଡକର୍ତ୍ତା ତାଙ୍କ ଗଢ଼ିଥିବା ବସ୍ତୁକୁ ଆଉଥରେ କାହିଁକି ଗଢ଼ିଦେଇ ପାରିବେ ନାହିଁ ? ସ୍ରଷ୍ଟା କହନ୍ତି ଯେ, ତୁମେ ପଥର ହୋଇଯାଅ ବା ଲୁହା, ଅବଶ୍ୟ ମୁଁ ତୁମକୁ ପୁନର୍ଜୀବିତ କରିବି :

> ''ଏବଂ ସେମାନେ କୁହନ୍ତି ଯେ, ଯେତେବେଳେ ଆମେ (ମରିସାରି) ହାଡ଼ ମାଟି ହୋଇଯିବୁ, ସେତେବେଳେ କ'ଣ ପ୍ରକୃତରେ ଆମକୁ ଏକ ନୂତନ ସୃଷ୍ଟି ରୂପେ ପୁନରୁତ୍‌ଥିତ କରାଯିବ ? ତୁମେ ସେମାନଙ୍କୁ କୁହ ଯେ, ତୁମ୍ଭେମାନେ ପଥର ହୋଇଯାଅ ବା ଲୁହା ହୋଇଯାଅ; ବା ଏପରି କୌଣସି ସୃଷ୍ଟ ପଦାର୍ଥ (ହୋଇଯାଅ), ଯାହା ତୁମ୍ଭମାନଙ୍କ ମତରେ ଏହାଠାରୁ ମଧ୍ୟ କଠିନତର (ତଥାପି ତୁମ୍ଭମାନଙ୍କୁ ପୁନର୍ବାର ଜୀବିତ କରାଯିବ) । ପୁଣି ସେମାନେ ନିଶ୍ଚୟ ପଚାରିବେ ଯେ, କିଏ ଆମ୍ଭମାନଙ୍କୁ ପୁନରାୟ (ଜୀବିତ କରି) ଆଣିବ ? ତୁମେ ଉତ୍ତର ଦିଅ—ସେଇ, ଯିଏ ତୁମ୍ଭମାନଙ୍କୁ ପ୍ରଥମ ଥର ସୃଷ୍ଟି କରିଥିଲେ ।''
>
> **କୁର୍‌ଆନ ୧୭ : ୪୯-୫୧**

ଯେଉଁମାନେ କମ୍ପ୍ୟୁଟର୍ ବ୍ୟବହାର କରନ୍ତି, ସେମାନେ ଜାଣନ୍ତି ଯେ, କମ୍ପ୍ୟୁଟର୍‌ରୁ କୌଣସି ଫାଇଲ୍ ଡିଲିଟ୍ କରାଯାଇପାରେ । ଫାଇଲ୍‌ଟି ରିସାଇକଲ୍‌ବିନ୍‌ରୁ ଡିଲିଟ୍ ହୋଇଗଲେ ଆଉ ଖୋଲେ ନାହିଁ । ସର୍ଚ୍ଚ କମାଣ୍ଡ ଦେଇ କମ୍ପ୍ୟୁଟର୍‌ଯାକ ଖୋଜିଲେ ମଧ୍ୟ ସେ ଫାଇଲ୍ ମିଳେନାହିଁ । ଏହାକୁ ଏକ ମୃତ ଫାଇଲ୍ ବୋଲି ଧରି ନିଆଯାଇପାରେ । କିନ୍ତୁ ଫାଇଲ୍‌ଟି ଡିଲିଟ୍ ହୋଇଯାଇଥିବା ସତ୍ତ୍ୱେ ତା' ଅସ୍ତିତ୍ୱ କମ୍ପ୍ୟୁଟର୍‌ର ହାର୍ଡ-ଡିସ୍କରୁ ସମ୍ପୂର୍ଣ୍ଣ ଲୋପ

ପାଇଯାଇନଥାଏ । ବରଂ ଏହା ତା'ରି ଭିତରେ ହିଁ ଥାଏ । ସ୍ୱତନ୍ତ୍ର ସଫ୍ଟୱେୟାର୍ ସାହାଯ୍ୟରେ ଏହାର ପୁନରୁଦ୍ଧାର ମଧ୍ୟ କରାଯାଇପାରେ । ଠିକ୍ ସେହିପରି ମଣିଷ ଧରାପୃଷ୍ଠରୁ ଡିଲିଟ୍ ହୋଇଗଲାପରେ ମଧ୍ୟ ଭୂମଣ୍ଡଳ ରୂପକ ହାର୍ଡ-ଡିସ୍କ ମଧ୍ୟରେ ରହିଥାଏ । ସ୍ରଷ୍ଟାଙ୍କର ଥରେ ମାତ୍ର 'ରିକଭର୍' କମାଣ୍ଡ ତାକୁ ପୁନରୁଦ୍ଧାର କରି ପୁନଃସ୍ଥାପିତ କରିଦେବା ପାଇଁ ଯଥେଷ୍ଟ ।

ଦିନେ ସୃଷ୍ଟିର ବିନାଶ ହେବ, ଯାହାକୁ ମହାପ୍ରଳୟ କହନ୍ତି । ଆରବୀ ଭାଷାରେ ଏହାକୁ 'କୟାମତ୍' କୁହାଯାଏ । ମହାପ୍ରଳୟ ଦିନ ସୃଷ୍ଟିର ସବୁ ଜୀବ-ଜଡ଼ ନଷ୍ଟବିନଷ୍ଟ ହୋଇଯିବେ । ଧରିତ୍ରୀ ଓ ଆକାଶର ଅବସ୍ଥାରେ ବ୍ୟାପକ ପରିବର୍ତ୍ତନ ହେବା ସହିତ ପ୍ରକୃତିକୁ ନିୟନ୍ତ୍ରଣ କରୁଥିବା ନିୟମଗୁଡ଼ିକ ମଧ୍ୟ ବଦଳିଯିବ ଏବଂ ନୂତନ ପ୍ରାକୃତିକ ନିୟମ ସହ ପୃଥିବୀର ପୁନଃନିର୍ମାଣ ହେବ । ଏହି ନୂତନ ପୃଥିବୀରେ ଦିନ, ରାତି ଓ ଋତୁଚକ୍ର ଆଦିରେ ଅନେକ ପରିବର୍ତ୍ତନ ହେବ । ଏହାର ଗୋଟିଏ ଦିନର ଅବଧି ମର୍ତ୍ତ୍ୟଲୋକର ପଚାଶ ହଜାର ବର୍ଷର ଅବଧି ସହ ସମାନ ।

ବିଚାର ଆରମ୍ଭ ହେବା ପୂର୍ବରୁ ମୃତଲୋକମାନଙ୍କୁ ସ୍ରଷ୍ଟାଙ୍କ ସମ୍ମୁଖରେ ହାଜର ହେବା ପାଇଁ ଆହ୍ୱାନ୍ କରାଯିବ । ତତ୍‌କ୍ଷଣାତ୍ ସମସ୍ତେ ଧରାପୃଷ୍ଠରୁ ପୁନର୍ଜୀବିତ ହୋଇଉଠିବେ । ମଣିଷର ଏହି ପୁନରୁତ୍‌ଥାନକୁ ଆରବୀ ଭାଷାରେ 'ହଶର୍' କୁହାଯାଏ । ପୁନର୍ଜୀବନ କ୍ରିୟା ଅନ୍ୟ କୌଣସି ନୂତନ ଗ୍ରହରେ ନୁହେଁ, ବରଂ ଏହି ଧରାପୃଷ୍ଠରେ ହେବ ଏବଂ ଏହିଠାରେ ହିଁ ଲୋକମାନଙ୍କର ବିଚାର ହେବ । ମଣିଷ ଯେଉଁ ଶରୀରରେ ଇହଲୋକ ତ୍ୟାଗ କରିଥିବ, ସେହି ଶରୀର ସହ ସେଠାରେ ଉପସ୍ଥିତ ହେବ ।

ସେଦିନ ଲୋକମାନେ ଏପରି ଜୀବନ୍ୟାସ ପାଇଉଠିବେ, ଯେପରି ଭୂଇଁରୁ ଗଜାଉଠେ । ଆମେ ଦେଖୁ ଯେ, ଖରାଦିନେ ଶୁଷ୍କ ଭୂଇଁ ମୃତପ୍ରାୟ ପଡ଼ିଥାଏ, ଯେଉଁଥିରେ ଜୀବନର କୌଣସି ଚିହ୍ନବର୍ଣ୍ଣ ମଧ୍ୟ ନଥାଏ । ସାମାନ୍ୟ ଖଣ୍ଡେ ଘାସ ମଧ୍ୟ କଅଁଳେ ନାହିଁ । କିନ୍ତୁ ମୌସୁମୀ ଆସିବାମାତ୍ରେ ସେହି ଭୂଇଁର ରୂପରଙ୍ଗ ବଦଳିଯାଏ । ବର୍ଷାଜଳ ପଡ଼ିବାକ୍ଷଣି ସେହି ମୃତଭୂମିରେ ହଠାତ୍ ପ୍ରାଣସଞ୍ଚାର ହୋଇଯାଏ ଏବଂ ସେଥିରୁ ଗତ ବର୍ଷାକାଳରେ ଜନ୍ମ ହୋଇ ମରିଯାଇଥିବା ଗୁଳ୍ମଲତାଗୁଡ଼ିକ ପୁଣି ବାହାରିପଡ଼ନ୍ତି । ଯେଉଁ ସରୀସୃପ ଓ କୀଟପତଙ୍ଗ ଗୁଡ଼ିକର ଗ୍ରୀଷ୍ମକାଳରେ ଚିହ୍ନବର୍ଣ୍ଣ ମଧ୍ୟ ନଥିଲା, ହଠାତ୍ ବାହାରିପଡ଼ି ବୁଲିବା ଆରମ୍ଭ

କରିଦିଅନ୍ତି । ଯେଉଁ ଭୂମି ଅସଂଖ୍ୟ ଜୀବଙ୍କର ସମାଧି ପାଲଟି ଯାଇଥିଲା, ହଠାତ୍ ନିଜର ପୂର୍ଣ୍ଣ ସବୁଜିମା ନେଇ ଜୀବିତ ହୋଇଉଠେ । ଏହି ଘଟଣାକୁ ବର୍ଣ୍ଣନା କରି ପବିତ୍ର କୁର୍‌ଆନ କହିଛି :

> "ଏବଂ ସେଇ ହିଁ ଆକାଶରୁ ଏକ ନିର୍ଦ୍ଦିଷ୍ଟ ପରିମାଣରେ ଜଳ ବୃଷ୍ଟି କରାନ୍ତି; ତା'ପରେ ଏହାଦ୍ୱାରା ମୃତଭୂମିରେ ପ୍ରାଣ ସଞ୍ଚାର କରନ୍ତି; ଏହିପରି (ଦିନେ) ତୁମ୍ଭେମାନେ ମଧ୍ୟ (ପୁନର୍ଜୀବିତ ହୋଇ) ଉଠିବ ।"
>
> କୁର୍‌ଆନ ୪୩ : ୧୧

ଚିକିତ୍ସା ବିଜ୍ଞାନରେ ଜ୍ଞାନ ନଥିଲେ ପ୍ରବୀଣ ଚିକିତ୍ସକଙ୍କ ସହ ପରାମର୍ଶ କରାଯାଏ । ମନେ କରନ୍ତୁ, ଜଣକୁ ଏମିତି ଗୋଟିଏ ରୋଗ ହୋଇଛି, ଯାହା ବିଷୟରେ ଦେଶର ସବୁ ବଡ଼ ବଡ଼ ଡାକ୍ତରମାନେ ସମାନ ମତପୋଷଣ କରୁଛନ୍ତି, ତେବେ କ'ଣ ଏହି ରୋଗପ୍ରତି ସନ୍ଦେହ କରାଯାଇପାରେ ? ସେହିପରି ଈଶ୍ୱରଙ୍କର ସମସ୍ତ ବାର୍ତ୍ତାବହମାନେ ମାନବସମାଜକୁ ସତର୍କ କରିଛନ୍ତି ଯେ, ମନୁଷ୍ୟ ଅବଶ୍ୟ ପୁନର୍ଜୀବିତ ହେବ ଏବଂ ତାକୁ ନିଜ କର୍ମର ଫଳ ମଧ୍ୟ ଭୋଗ କରିବାକୁ ପଡ଼ିବ । ପୁଣି ଏ ବିଷୟରେ ସନ୍ଦେହର ଅବକାଶ କାହିଁ ? ମହାମାନ୍ୟ ବାର୍ତ୍ତାବହମାନେ ସମସ୍ତେ କ'ଣ ଭ୍ରମରେ ପଡ଼ିଯାଇଥିଲେ ? ତେଣୁ ମନୁଷ୍ୟ ସାବଧାନ ହେବା ଉଚିତ, କାରଣ ତାକୁ କର୍ମର ସୁଯୋଗ ଆଉ ମିଳିବ ନାହିଁ ।

ଇସ୍‌ଲାମ ଅନୁସାରେ ଜୀବ ଏହି ସଂସାରକୁ ଆଉ ଫେରିବ ନାହିଁ । ମଣିଷର ଆତ୍ମଶୁଦ୍ଧି ଓ ଆତ୍ମସଂଶୋଧନ ପାଇଁ ବର୍ତ୍ତମାନ ଜୀବନ ହିଁ ଅନ୍ତିମ ସୁଯୋଗ । ପରଲୋକର ଶାନ୍ତି ଓ ମୁକ୍ତି ପାଇଁ ଯାହାକିଛି କରାଯାଇପାରେ, ତାହା କେବଳ ଏହି ଜୀବନକାଳରେ ହିଁ ସମ୍ଭବ ।

କ୍ଷଣସ୍ଥାୟୀ ଜୀବନରେ ମନୁଷ୍ୟର ପ୍ରତ୍ୟେକଟି ମୁହୂର୍ତ୍ତ ଅତି ମୂଲ୍ୟବାନ । ଯଦି ଏହି ସର୍ବଶ୍ରେଷ୍ଠ ଜୀବ ନିଜ ଜୀବନକାଳରେ ପାଇଥିବା ଅମୂଲ୍ୟ ମୁହୂର୍ତ୍ତଗୁଡ଼ିକର ସଦୁପଯୋଗ ନକରେ, ତେବେ ମୃତ୍ୟୁ ପରେ ତାକୁ ଆଉ ଏହି ସୁଯୋଗ ମିଳିବ ନାହିଁ । ଅନେକ ଲୋକ ପରଲୋକରେ ଘୋର ଅନୁତାପ କରିବେ । ସେମାନେ ଈଶ୍ୱରଙ୍କୁ ଆକୁଳ ନିବେଦନ କରିବେ ଯେ–ପ୍ରଭୁ ! ଆମେ ସତ୍ୟ କ'ଣ ଜାଣିପାରି ନଥିଲୁ । ଆମକୁ ଆଉଥରେ ସଂସାରକୁ ପଠାଇଦିଅନ୍ତୁ ।

ଆମେ ଏଥର ନିଶ୍ଚୟ ପୁଣ୍ୟକର୍ମ କରିବୁ । ଏମାନଙ୍କ ଅବସ୍ଥା ବର୍ଣ୍ଣନା କରି କୁର୍‌ଆନ କହିଛି :

''ଯଦି ତୁମେ ଦେଖିପାରନ୍ତ, ଯେତେବେଳେ ଅପରାଧିମାନେ ନିଜ ପାଳନକର୍ତ୍ତାଙ୍କ ଛାମୁରେ ନତମସ୍ତକ ହୋଇ ଠିଆ ହୋଇଥିବେ ଏବଂ କହୁଥିବେ—ହେ ଆମ ପାଳନକର୍ତ୍ତା ! ଆମେ (ପ୍ରକୃତ କଥା) ଦେଖିସାରିଲୁ, ଶୁଣିସାରିଲୁ । ଏବେ ଆମକୁ (ସଂସାରକୁ) ଫେରାଇ ଦିଅନ୍ତୁ, ଆମେ (ଏଥର) ପୁଣ୍ୟକର୍ମ କରିବୁ, (କାରଣ) ଆମକୁ ଏବେ ବିଶ୍ୱାସ ହୋଇଯାଇଛି ।''

କୁର୍‌ଆନ ୩୨ : ୧୨

ସେମାନଙ୍କୁ ଉତ୍ତର ଦିଆଯିବ ଯେ, ତୁମେମାନେ ଯେମିତି ସ୍ରଷ୍ଟାଙ୍କ ସହ ଏହି ସାକ୍ଷାତ ଦିବସକୁ ପାଶୋରି ଦେଇଥିଲ, ସେହିପରି ସେ ମଧ୍ୟ ଆଜି ତୁମମାନଙ୍କୁ ପାଶୋରି ଦେଲେ ଏବଂ ତୁମେମାନେ ଚିରଦିନ ପାଇଁ ନିଜ କୃତକର୍ମର ଶାସ୍ତି ଭୋଗ କର ।

ମର୍ତ୍ତ୍ୟଲୋକକୁ ଆଉଥରେ ଆସିବାର ସୁଯୋଗ ଦେଲେ, କେବଳ ସେହି ବ୍ୟକ୍ତି ନିଜକୁ ସଂଶୋଧନ କରିବାର ଚେଷ୍ଟା କରିପାରେ, ଯାହାକୁ ନିଜ ପୂର୍ବଜନ୍ମ ଓ ପରଲୋକର ସମସ୍ତ ଘଟଣା ମନେଥିବ ଏବଂ ତା' ସ୍ମରଣଶକ୍ତିରେ କୌଣସି ପରିବର୍ତ୍ତନ ହୋଇନଥିବ । ଯଦି ତାକୁ ମନେଥାଏ ଯେ, ପୂର୍ବଜନ୍ମରେ ସେ କି କୁକର୍ମ କରିଥିଲା ଏବଂ ପରଲୋକରେ କିପରି ଭୟଙ୍କର ପରିଣାମର ସମ୍ମୁଖୀନ ହେଲା, ତେବେ ହୁଏତ ସେ ସେହି ଭୁଲ୍‌କୁ ସଂଶୋଧନ କରିବାର ଚେଷ୍ଟା କରିବ । କିନ୍ତୁ ପୂର୍ବସ୍ମୃତିକୁ ମସ୍ତିଷ୍କରେ ସୁରକ୍ଷିତ ରଖି ମନୁଷ୍ୟକୁ ପୁନରାୟ ସଂସାରକୁ ପଠାଇବା ଦ୍ୱାରା ତାକୁ ପରୀକ୍ଷା କରିବାର ଉଦ୍ଦେଶ୍ୟ ସାଧିତ ହୋଇପାରିବ ନାହିଁ, ଯଥା—ସେ ନିଜ ବୁଦ୍ଧି ଦ୍ୱାରା ସତ୍ୟକୁ ଚିହ୍ନିପାରୁଛି ବା ନାହିଁ, ସୃଷ୍ଟିକୁ ଦେଖି ସ୍ରଷ୍ଟାଙ୍କୁ ଜାଣିପାରୁଛି ବା ନାହିଁ, କିମ୍ବା ସତ୍ ଓ ଅସତ୍ ଉଭୟ କର୍ମ କରିବାର ସ୍ୱତନ୍ତ୍ରତା ପାଇଥିଲେ ସୁଦ୍ଧା ସେ ନିଜ ପାଇଁ କେଉଁ ପଥ ବାଛୁଛି ।

କୌଣସି କର୍ମର କୁପରିଣାମ ନିଜ ଆଖିରେ ଦେଖିସାରି ଯଦି ଜଣେ ସେହି କର୍ମ ନକରେ, ତେବେ ସେ କୌଣସି ବଡ଼ କାର୍ଯ୍ୟ କରିଦିଏ ନାହିଁ । ପରଲୋକକୁ ଆଖିରେ ଦେଖି ବିଶ୍ୱାସ କରିବା କୌଣସି ବଡ଼ କଥା ନୁହେଁ । କୋଟି କୋଟି ଲୋକ ଯେଉଁମାନେ ଈଶ୍ୱରଙ୍କୁ ଏବଂ ପରଲୋକକୁ ଦେଖିନାହାନ୍ତି

ବା ପୁନର୍ଜୀବିତ ହେବାର ଅଭିଜ୍ଞତା ମଧ ସେମାନଙ୍କର ନାହିଁ, ତଥାପି ଏହି ସତ୍ୟକୁ ସ୍ୱୀକାର କରିନେଇଛନ୍ତି । ଯଦି ଜଣେ ପରଲୋକରେ ନିଜ ଆଖିରେ ସବୁକିଛି ଦେଖିଆସି କହେ, ଯେ ଈଶ୍ୱର ଅଛନ୍ତି ବା ପୁନର୍ଜୀବନ ଅଛି, ତେବେ ସେ କି ବଡ଼ ଆଶ୍ଚର୍ଯ୍ୟ କାର୍ଯ୍ୟ କରିଦେଲା ? ଆଖି ତ ଦେଖିବା ପାଇଁ ହିଁ ଥିଲା । ଦେଖିସାରି ନ ମାନିବା ଛଡ଼ା ତା'ର ଆଉ ବାଟ କ'ଣ ଥିଲା ? ତେଣୁ ଆଖିରେ ଦେଖି ବିଶ୍ୱାସ କରିବାକୁ ଧର୍ମର ଭାଷାରେ 'ବିଶ୍ୱାସ' କୁହାଯାଏ ନାହିଁ ବା ଏହାର କୌଣସି ମୂଲ୍ୟ ମଧ ନାହିଁ । ତେଣୁ ପୂର୍ବଜନ୍ମର ସ୍ମରଣଶକ୍ତିକୁ ସୁରକ୍ଷିତ ରଖି ମଣିଷକୁ ପୁନରାୟ ସଂସାରକୁ ପଠାଇବାରେ କୌଣସି ଲାଭ ନାହିଁ ।

ଅନ୍ୟ ପକ୍ଷରେ ଯଦି ତାକୁ ପୂର୍ବ ସ୍ମରଣଶକ୍ତି ନ ଦେଇ ସଂସାରକୁ ପଠାଇ ଦିଆଯାଏ, ତେବେ ଶୂନ୍ୟ ମସ୍ତିଷ୍କ ନେଇ ଆସିଥିବା ସେ ବ୍ୟକ୍ତିର ପୂର୍ବଜନ୍ମ କଥା କିଛି ମନେ ନଥିବ । ତେଣୁ ସେ ସେଇ କର୍ମ କରିବ, ଯାହା ପୂର୍ବଜନ୍ମରେ କରୁଥିଲା । ତାକୁ ଏହା ମଧ ମନେ ନଥିବ ଯେ, ସେ କେବେ ଓ କେଉଁଠି ଜନ୍ମ ହୋଇଥିଲା ଏବଂ କି କି କର୍ମ କରିଥିଲା । ତେଣୁ ଏପରି ବ୍ୟକ୍ତିକୁ ପୁନର୍ବାର ସଂସାରରେ କର୍ମ କରିବାର ସୁଯୋଗ ଦେବାର ଆବଶ୍ୟକତା ମଧ ନାହିଁ । ଏ ବିଷୟରେ ସ୍ପଷ୍ଟ କରି କୁର୍‌ଆନ କହିଛି :

> ''ଯଦି ତୁମେ ସେହି ସମୟର ଅବସ୍ଥା ଦେଖିପାରନ୍ତ ଯେ, ଯେତେବେଳେ ସେମାନଙ୍କୁ ନରକ ପାଖରେ ଛିଡ଼ା କରାଯିବ, ସେମାନେ କହିବେ—ଆହା ! ଯଦି ଆମକୁ ପୁନରାୟ ସଂସାରକୁ ଫେରାଇ ଦିଆଯାଆନ୍ତା, ତେବେ କେତେ ଭଲ ହୁଅନ୍ତା ! (ଯଦି ଏମିତି ହୁଅନ୍ତା) ତେବେ ଆମ୍ଭେ ଆମ ପାଳନକର୍ତ୍ତାଙ୍କ ନିଦର୍ଶନଗୁଡ଼ିକୁ କଦାପି ମିଥ୍ୟା ମନେ କରନ୍ତୁ ନାହିଁ ଏବଂ ବିଶ୍ୱାସକାରୀମାନଙ୍କ ମଧରେ (ଅନ୍ତର୍ଭୁକ୍ତ) ହୁଅନ୍ତୁ ।
>
> ପ୍ରକୃତରେ (ଏକଥା ସେମାନେ ଏଇଥିପାଇଁ କହିବେ ଯେ) ଯେଉଁ ସତ୍ୟକୁ ସେମାନେ ଲୁଚାଇ ରଖୁଥିଲେ, ତାହା ସେମାନଙ୍କ ଆଗରେ (ଆଜି) ପ୍ରକାଶିତ ହୋଇଯାଇଛି । ଏବଂ ଯଦି ସେମାନଙ୍କୁ ଫେରାଇ ଦିଆଯାଆନ୍ତା, ତେବେ ସେମାନଙ୍କୁ ଯେଉଁ

ବିଷୟରେ ବାରଣ କରାଯାଇଥିଲା, ସେମାନେ ନିଶ୍ଚୟ ତାହାହିଁ କରନ୍ତେ ଏବଂ ପ୍ରକୃତରେ ସେମାନେ ଘୋର ମିଥ୍ୟାବାଦୀ ।''

କୁର୍‌ଆନ ୬ : ୨୭-୨୮

ତେଣୁ ବର୍ତ୍ତମାନ ଜୀବନକାଳ ହିଁ କର୍ମ କରିବା ପାଇଁ ଏକମାତ୍ର ସୁଯୋଗ । ତଥାପି ଯଦି କାହା ମନରେ ସନ୍ଦେହ ଥାଏ, ତେବେ ଅନ୍ତତଃ ପ୍ରତିଷେଧାତ୍ମକ ବ୍ୟବସ୍ଥା ସ୍ୱରୂପ ପୁନର୍ଜୀବନକୁ ସ୍ୱୀକାର କରିନେବା ହିଁ ବିଜ୍ଞତା । ଏଥିରେ ବିପଦ ନାହିଁ । ମନେ କରନ୍ତୁ, କେହି ଜଣେ ଆପଣଙ୍କୁ କିଛି ଖାଇବାକୁ ଦେଲା । ଏତିକିବେଳେ ଅନ୍ୟ ଜଣେ ବ୍ୟକ୍ତି ଆସି କହିଲା ଯେ, ସେ ଖାଦ୍ୟ ଖାଆନ୍ତୁ ନାହିଁ, ସେଥିରେ ବିଷ ମିଶିଛି । ଏଠାରେ ଆପଣଙ୍କୁ ସନ୍ଦେହ ହୁଏ । ଏ କ୍ଷେତ୍ରରେ ଜଣେ ବୁଦ୍ଧିମାନ ବ୍ୟକ୍ତି ସତର୍କତାମୂଳକ ପଦକ୍ଷେପ ନିଏ । ତେଣୁ ଆପଣ ସେ ଖାଦ୍ୟ ଖାଆନ୍ତି ନାହିଁ । ନ ଖାଇ ଭୋକର କଷ୍ଟ ସହିହେବ, କିନ୍ତୁ ଖାଇବାର ଦୁଃସାହସ କରି ମୃତ୍ୟୁର ବିପଦକୁ ଡାକି ଆଣିବା ବିଜ୍ଞତାର ପରିଚୟ ନୁହେଁ ।

□□□

# ପୁନର୍ଜୀବନର କାରଣ

ଜଗତପତିଙ୍କ ନ୍ୟାୟର ପୂର୍ଣ୍ଣ ପରିପ୍ରକାଶ ହିଁ ପୁନର୍ଜୀବନର ମୁଖ୍ୟ କାରଣ । ଯଦି ପୁନର୍ଜୀବନ ନ ହୁଏ, ତେବେ ସ୍ରଷ୍ଟାଙ୍କ ପ୍ରସନ୍ନତା ପାଇଁ ଦୁଃଖକଷ୍ଟ ସହୁଥିବା ଧର୍ମାତ୍ମାମାନଙ୍କୁ ପୁରସ୍କୃତ କରାଯାଇପାରିବ ନାହିଁ, କିମ୍ବା ଦୁରାଚାରୀ ଓ ଦୁରାତ୍ମାମାନଙ୍କୁ ଉଚିତ ଶାସ୍ତି ମଧ୍ୟ ଦିଆଯାଇପାରିବ ନାହିଁ । ଏଭଳି ସ୍ଥିତିରେ ଏ ବିଶାଳ ସୃଷ୍ଟି ଏକ ନାଟକ ମାତ୍ର ହୋଇ ରହିଯିବ । କ'ଣ ଆମ ଈଶ୍ୱର ନିଜ ଭକ୍ତମାନଙ୍କ ପ୍ରତି ଅନ୍ୟାୟ-ଅବିଚାର କରିବେ ? ସ୍ରଷ୍ଟାଙ୍କ ପ୍ରତି ଏଭଳି ଧାରଣା କୌଣସି ବିବେକଶୂନ୍ୟ ବ୍ୟକ୍ତି ହିଁ ରଖିପାରେ । ପବିତ୍ର କୁର୍‌ଆନରେ ଈଶ୍ୱର କହନ୍ତି :

> ''ଯେଉଁ ବ୍ୟକ୍ତି ପୁଣ୍ୟକର୍ମ କରିବ, ସେ ନିଜ ମଙ୍ଗଳ ପାଇଁ ହିଁ କରବ ଏବଂ ଯିଏ କୁକର୍ମ କରିବ, ତା' ଫଳ ମଧ୍ୟ ସେଇ ହିଁ ଭୋଗିବ; ଏବଂ ତୁମ ପାଳନକର୍ତ୍ତା ନିଜ ଭକ୍ତମାନଙ୍କ ପ୍ରତି ଅତ୍ୟାଚାର କରନ୍ତି ନାହିଁ ।''

କୁର୍‌ଆନ ୪୧ : ୪୬

କୌଣସି ପୁଣ୍ୟବାନ୍ ପୁରସ୍କୃତ ହେବାରୁ ବଞ୍ଚିତ ନ ହେଉ ବା କୌଣସି ପାପୀ ଦଣ୍ଡରୁ ଖସି ନଯାଉ, ଏଥିପାଇଁ ପୁନର୍ଜୀବନର ଆବଶ୍ୟକତା ଅଛି । ଈଶ୍ୱର କେବେହେଲେ ଭଲ ଓ ମନ୍ଦ ଉଭୟକୁ ସମାନ କରିଦେବେ ନାହିଁ ବା ଧାନ ବୁଣିଥିବା ବ୍ୟକ୍ତିକୁ ଗହମ ଦେଇଦେବେ ନାହିଁ । ଏହା ଘୋଷଣା କରି ସେ କହିଛନ୍ତି :

> ''କ'ଣ ଆମ୍ଭେ ପୁଣ୍ୟକର୍ମ କରୁଥିବା ବିଶ୍ୱାସକାରୀମାନଙ୍କୁ ଭୂପୃଷ୍ଠରେ ବିଶୃଙ୍ଖଳା ସୃଷ୍ଟି କରୁଥିବା ବ୍ୟକ୍ତିମାନଙ୍କ ସହ ସମାନ କରିଦେବୁ ? ଅଥବା କ'ଣ ଧର୍ମନିଷ୍ଠମାନଙ୍କୁ ଦୁରାଚାରୀମାନଙ୍କ ପରି କରିଦେବୁ ?''

କୁର୍‌ଆନ ୩୮ : ୨୮

ଅନ୍ୟ ଏକ ସ୍ଥାନରେ ସେ କହନ୍ତି :

> ''କ'ଣ ଆମ୍ଭେ ଆଜ୍ଞାକାରୀମାନଙ୍କୁ ଅପରାଧୀମାନଙ୍କ ପରି କରିଦେବୁ ? ତୁମ୍ଭମାନଙ୍କର କ'ଣ ହୋଇଛି ? ତୁମ୍ଭେମାନେ କିଭଳି ବିଚାର କରୁଛ ?''
>
> କୁର୍‌ଆନ ୬୮ : ୩୫-୩୬

ତେଣୁ ଆମ ସ୍ରଷ୍ଟା ଯେ ମନୁଷ୍ୟମାନଙ୍କ ପ୍ରତି ଅନ୍ୟାୟ କରିବେ ଏହା ଭାବିବା ହିଁ ମହାପାପ । ସେ କେବେହେଲେ କାହା ପ୍ରତି ଅନ୍ୟାୟ କରନ୍ତି ନାହିଁ ।

ଅନ୍ୟ ପକ୍ଷରେ ମନୁଷ୍ୟ ମଧ୍ୟ ସ୍ୱଭାବତଃ ନ୍ୟାୟପ୍ରିୟ । ସତ୍ୟ ଓ ନ୍ୟାୟ ତା'ର ପ୍ରାକୃତିକ ସ୍ୱଭାବ ଏବଂ ତା' ବିବେକର ଅନ୍ତଃସ୍ୱର । ହୁଏତ କୌଣସି ସ୍ୱାର୍ଥ ପାଇଁ ସେ ଅନ୍ୟ ପ୍ରତି ଅନ୍ୟାୟ କରିପକାଏ, କିନ୍ତୁ ତା' ଅନ୍ତରାତ୍ମା ନ୍ୟାୟପ୍ରିୟ । ଏହା ନ୍ୟାୟ ପସନ୍ଦ କରେ । ଏହାର ପ୍ରମାଣ ହେଉଛି ଯେ, ପ୍ରତ୍ୟେକ ଅନ୍ୟାୟ-ଅତ୍ୟାଚାରର ଘଟଣା ତାକୁ ବ୍ୟଥିତ କରେ, ନ୍ୟାୟସଙ୍ଗତ କଥା ତାକୁ ଆନନ୍ଦିତ କରେ ଏବଂ ଯଦି ସେ ନିଜେ କୌଣସି ନ୍ୟାୟପୂର୍ଣ୍ଣ କାର୍ଯ୍ୟ କରେ, ତାକୁ ଆତ୍ମସନ୍ତୋଷ ମିଳେ ।

ମନେକରନ୍ତୁ, ଜଣେ ଯୁବକ ଜଣେ ବୃଦ୍ଧବ୍ୟକ୍ତିକୁ ମାଡ଼ ମାରୁଥିବାର ଆପଣ ଦେଖିଲେ । ଏହା ସହି ନ ପାରି ଆପଣ ସେ ଯୁବକକୁ ପଚାରିଲେ,''ବାବୁ ! କାହିଁକି ସେ ବୁଢ଼ାଲୋକଟାକୁ ମାରୁଛ ? ସେ ପରା ତୁମ ବାପ ବୟସର ହେବେ ।''

ଯୁବକ ଜଣକ ଉତ୍ତର ଦେଲା—''ବାପା ବୟସର ନୁହେଁ, ଏ ମୋ ବାପା । କିନ୍ତୁ ତା' ଗୁଣ ଭାରି ଖରାପ । ଆପଣ ନିଜ ବାଟରେ ଯାଆନ୍ତୁ, ଆମ ଘର କଥାରେ ମୁଣ୍ଡ ଖେଳାଇବା ଦରକାର ନାହିଁ ।''

ଉତ୍ତରଟା ଆପଣଙ୍କୁ ଭାରି ବାଧିଲା । କେଡ଼େ ଅସଭ୍ୟ ଲୋକଟା ! ନିଜ ବାପାଟାକୁ ହାତ ଉଠାଇ ମାରୁଛି ! ଇଚ୍ଛା ହେଉଥାଏ ଦି' ଚାବୁଡ଼ା ମାରି ତା' ଗାଲ ଫଟାଇ ଦିଅନ୍ତେ । କିନ୍ତୁ ସେ ଅସଭ୍ୟ ପାଖକୁ ଯିବାକୁ ଆପଣ ସାହସ କଲେ ନାହିଁ । ଏଇ ଅବସ୍ଥାରେ ସେ ବୃଦ୍ଧ ପ୍ରତି ଆପଣ ହଠାତ୍ ସହାନୁଭୂତିଶୀଳ ହୋଇପଡ଼ିଲେ ଏବଂ ମନରେ ତା' ପାଇଁ ଦୟାଭାବ ଜାତ

ହେଲା । ଏହା ସହିତ ସେ ପାପିଷ୍ଠ ପୁତ୍ର ପ୍ରତି ମନରେ ଭୀଷଣ କ୍ରୋଧ ଓ ଘୃଣା ମଧ୍ୟ ଜାତ ହେଲା ।  ମନ୍ ହେଉଥାଏ, କେହି ସେ ପାଷଣ୍ଡଟାକୁ ଭଲ କରି ଛେଚି ଦିଅନ୍ତା କି !

ସୌଭାଗ୍ୟବଶତଃ ଦି' ଚାରିଜଣ ଲୋକ ସେଠି ପହଞ୍ଚିଗଲେ । ସେମାନେ ଘଟଣା କ'ଣ ବୋଲି ପଚାରିଲେ । ବୁଢ଼ାଟି କାନ୍ଦୁଥାଏ । ଆପଣ ସେମାନଙ୍କୁ କହିଲେ ଯେ, ବୁଢ଼ାକୁ ମାରୁଥିବା ଲୋକଟି ତା' ପୁଅ । ଏହା ଶୁଣିବାମାତ୍ରେ ସେମାନେ ହସ୍ତକ୍ଷେପ କଲେ । ଯୁବକ ଜଣକ ରାଗିଯାଇ ତାଙ୍କ ସହ ଯୁକ୍ତିତର୍କ କଲା । ତେଣୁ ସମସ୍ତେ ମିଶି ତାକୁ ନିର୍ଘାତିଆ ଛେଚି ଦେଇଗଲେ ।

ଆଃ ! ଭାରି ବଢ଼ିଆ ହେଲା । ଆପଣଙ୍କ ମୁହଁରେ ହସ ଫୁଟିଉଠିଲା ଏବଂ ଆପଣଙ୍କ ବ୍ୟଥିତ ମନ ଶାନ୍ତ ହୋଇଗଲା ।

ଏଠାରେ ପ୍ରଶ୍ନ ହେଉଛି ଯେ, କାହିଁକି ଆପଣଙ୍କ ମନରେ ଏପରି ପରିବର୍ତ୍ତନ ଆସିଲା ?  ସେମାନଙ୍କୁ ଆପଣ ଜାଣନ୍ତି ନାହିଁ ବା ସେମାନଙ୍କ ସହିତ କୌଣସି ସମ୍ପର୍କ ମଧ୍ୟ ନାହିଁ, ପୁଣି କେଉଁଥିପାଇଁ ସେ ଯୁବକ ପ୍ରତି ଆପଣ କ୍ରୋଧାନ୍ୱିତ ହେଲେ ଏବଂ କାହିଁକି ତାକୁ ଶାସ୍ତି ମିଳୁଥିବା ଦେଖି ଆପଣ ଆନନ୍ଦିତ ହେଲେ ? କେଉଁଥିପାଇଁ ସେ ବୃଦ୍ଧବ୍ୟକ୍ତି ସକାଶେ ମନରେ ଦୟା ଆସିଲା ?

ଏହା ଏଇଥିପାଇଁ ଯେ, ଆପଣଙ୍କ ମଧ୍ୟରେ ଯେଉଁ ଅନ୍ତରାତ୍ମା ରହିଛି, ତାହା ନ୍ୟାୟପ୍ରିୟ । ଅନ୍ୟାୟ ହେଉଥିବାର ଦେଖି ଏହା ସ୍ୱାଭାବିକ ଭାବେ ନ୍ୟାୟ ଚାହିଁଲା ଏବଂ ଯେତେବେଳେ କିଛିଟା ନ୍ୟାୟ ହୋଇଛି ବୋଲି ଜାଣିଲା, ଆପଣଙ୍କ ହୃଦୟ ଶାନ୍ତ ହୋଇଗଲା ।

ଏହି ନ୍ୟାୟପରାୟଣତା ସ୍ୱଭାବ ଯୋଗୁଁ ଆମେ ଚାହୁଁ ଯେ, କେହି ଆମ ସହିତ ଦୁର୍ବ୍ୟବହାର ନ କରୁ, ଆମ ସହ ଛଳକପଟ ନ କରୁ, ଆମକୁ ପ୍ରତାରଣା ନ କରୁ, ଆମକୁ ମିଛ ନ କହୁ, କିମ୍ବା ଆମ ଧନ-ଜୀବନ ବା ମାନ-ସମ୍ମାନର କୌଣସି କ୍ଷତି ନ କରୁ ।  ଯଦି କେହି ଆମ ସହିତ ଏଭଳି କରେ, ତେବେ ଆମେ ଭାବୁ ଯେ, ଆମ ପ୍ରତି ଅନ୍ୟାୟ ହେଲା ।  ଫଳସ୍ୱରୂପ ସେ ବ୍ୟକ୍ତି ପ୍ରତି ଆମ ମନରେ କ୍ରୋଧ ଓ ଘୃଣାଭାବ ଜାତ ହୁଏ ଏବଂ ଆମ ଅନ୍ତରାତ୍ମା ନ୍ୟାୟ ଦାବୀ କରେ ଯେ, ଆମ ପ୍ରତି ଅନ୍ୟାୟ କରିଥିବା ବ୍ୟକ୍ତିକୁ ସମୁଚିତ ଶାସ୍ତି ମିଳୁ ଏବଂ ଆମକୁ ଉପଯୁକ୍ତ କ୍ଷତିପୂରଣ ଦିଆଯାଉ ।

ଠିକ୍ ଏଇକଥା ପୃଥିବୀର ଅନ୍ୟସବୁ ମଣିଷମାନେ ମଧ୍ୟ ଚାହାନ୍ତି । ଯେମିତି ଆମେ ଚାହୁଁ ଯେ, ଆମ ଧନ-ଜୀବନ ଓ ମାନ-ସମ୍ମାନର କୌଣସି କ୍ଷତି ନ ହେଉ, ସେହିପରି ଅନ୍ୟ ମଣିଷମାନେ ମଧ୍ୟ ଚାହାନ୍ତି । ଯେପରି ଆମେ ନିଜ ପାଇଁ ନ୍ୟାୟ ଆଶା କରୁ, ସେହିପରି ଅନ୍ୟମାନେ ମଧ୍ୟ ନିଜ ପାଇଁ ନ୍ୟାୟ ଆଶା କରନ୍ତି । ଯେପରି ନ୍ୟାୟ ଆମର ଅଧିକାର, ସେହିପରି ଏହା ସଂସାରର ଅବଶିଷ୍ଟ ଲୋକଙ୍କର ମଧ୍ୟ ଅଧିକାର ।

କିନ୍ତୁ ପ୍ରଶ୍ନ ହେଉଛି ଯେ, ଏହି ନ୍ୟାୟ ମିଳିବ କେଉଁଠି ? କ'ଣ ଏହି ସଂସାରରେ ଏହା ସମ୍ଭବ ? ଯଦି ଏଇ ଦୁନିଆରେ ସମସ୍ତଙ୍କୁ ଉଚିତ ନ୍ୟାୟ ମିଳିଯାଆନ୍ତା ବା ସମସ୍ତେ ନିଜ ନିଜ କର୍ମର ପ୍ରତିଫଳ ପାଇଯାଆନ୍ତେ, ତେବେ ତ କଥା ସରିଯାଆନ୍ତା । ଆଉ ପୁନର୍ଜୀବିତ ହେବାର ଆବଶ୍ୟକତା ପଡ଼ନ୍ତା ନାହିଁ; କିମ୍ବା ସ୍ୱର୍ଗ ଓ ନର୍କର ମଧ୍ୟ ଦରକାର ହୁଅନ୍ତା ନାହିଁ । କିନ୍ତୁ ଆମେ ଦେଖୁ ଯେ, ଦୈନିକ ସହସ୍ର ଲୋକ ହତ୍ୟା, ଲୁଣ୍ଠନ, ଧର୍ଷଣ ଓ ଶୋଷଣର ଶିକାର ହୁଅନ୍ତି, ମାତ୍ର ସମସ୍ତଙ୍କୁ ସମାଜରେ ନ୍ୟାୟ ମିଳେ ନାହିଁ । ଛୋଟଛୁଆ ବିପଦରେ ମା'କୁ ଡାକିବା ଭଳି ସେମାନେ ଈଶ୍ୱରଙ୍କୁ ନ୍ୟାୟ ପାଇଁ ଆକୁଳ ପ୍ରାର୍ଥନା କରନ୍ତି । ସେମାନଙ୍କ ହୃଦୟ ଅନ୍ୟାୟ-ଅତ୍ୟାଚାର ବିରୁଦ୍ଧରେ ବିଳାପ କରେ । ତଥାପି ଏ ସଂସାରରେ ସମସ୍ତଙ୍କୁ ନ୍ୟାୟ ମିଳେ ନାହିଁ । ପୁଣ୍ୟବନ୍ତକୁ ନ୍ୟାଯ୍ୟ ପ୍ରତିଦାନ ବା ପାପୀ ପ୍ରତି ଉଚିତ ଦଣ୍ଡବିଧାନ ହୋଇପାରେ ନାହିଁ । ଦୁଃଖର ତାଡ଼ନାରେ ବିଚରା ନିର୍ଯ୍ୟାତିତ ଓ ନିଷ୍ପେଷିତ ମଣିଷମାନେ ଅସହାୟ ଆଖିରେ ଆକାଶକୁ ଚାହିଁ କହିଉଠନ୍ତି–"ହେ ଈଶ୍ୱର ! ତୁମେ କ'ଣ ନାହଁ ?"

ଈଶ୍ୱର ଅବଶ୍ୟ ଅଛନ୍ତି ଏବଂ ତାଙ୍କ ବିଚାର ମଧ୍ୟ କୁଆଡ଼େ ଯାଇନାହିଁ । କିନ୍ତୁ ଇହଲୋକକୁ ଯେହେତୁ ସେ କର୍ମକ୍ଷେତ୍ର କରି ମାନବର ପରୀକ୍ଷା ନିମନ୍ତେ ସୃଷ୍ଟି କରିଛନ୍ତି, ଏଠାରେ କର୍ମର ଫଳାଫଳ ପ୍ରକାଶ ପାଏ ନାହିଁ । ପବିତ୍ର କୁର୍‌ଆନ କହିଛି :

> "ତୁମ୍ଭମାନଙ୍କ ମଧ୍ୟରୁ କିଏ ଉତ୍ତମ କାର୍ଯ୍ୟ କରୁଛି, ତାହା ପରୀକ୍ଷା କରିବା ନିମନ୍ତେ ସେ (ଅଲ୍ଲାହ୍) ମୃତ୍ୟୁ ଓ ଜୀବନକୁ ସୃଷ୍ଟି କରିଛନ୍ତି; ଆଉ ସେ ପ୍ରବଳ ପରାକ୍ରମୀ ଏବଂ ଅତୀବ କ୍ଷମାଶୀଳ ।"
>
> କୁର୍‌ଆନ ୬୭ : ୨

ମନୁଷ୍ୟ ଇହଲୋକରେ ପରୀକ୍ଷା ଦିଏ, ପରଲୋକରେ ଫଳ ପ୍ରକାଶ ପାଏ ଏବଂ ସ୍ୱର୍ଗ ବା ନର୍କଲୋକରେ ସେ ତାହା ଭୋଗ କରେ । ସଂସାରରେ କର୍ମର ଆଂଶିକ ଫଳ ମିଳିଯାଇପାରେ; କିନ୍ତୁ ସମ୍ପୂର୍ଣ୍ଣ ପ୍ରତିଫଳ ବା ସବୁ କର୍ମର୍ ଫଳ ଏଠାରେ ମିଳିବା ଆଦୌ ସମ୍ଭବ ନୁହେଁ ।

ମଣିଷ ଜୀବନରେ ଯେଉଁ ଦୁଃଖ ବିପଦ ଆସେ, ସବୁଗୁଡ଼ିକ ମଣିଷର କର୍ମଫଳ ନୁହେଁ । କାରଣ ଦୁଃଖବିପଦ ଦ୍ୱାରା ମଧ ମଣିଷକୁ ପରୀକ୍ଷା କରାଯାଏ । ଈଶ୍ୱର ବିଭିନ୍ନ ଅବସ୍ଥା ସୃଷ୍ଟି କରି ତା'ର ପରୀକ୍ଷା ନିଅନ୍ତି । ତେଣୁ ସେ କହିଛନ୍ତି :

> "ଆମ୍ଭେ ତୁମକୁ ଭଲ ଓ ମନ୍ଦ ପରିସ୍ଥିତି ମାଧ୍ୟମରେ ପରୀକ୍ଷା କରୁ; ଏବଂ ତୁମମାନଙ୍କୁ ଆମ୍ଭ ନିକଟକୁ ଫେରିବାକୁ ହେବ ।"
>
> **କୁର୍‌ଆନ ୨୧ : ୩୫**

ସାଧୁସନ୍ଥ ଓ ଧର୍ମାତ୍ମାମାନଙ୍କୁ ମଧ ଦୁଃଖବିପଦ ଆସେ; କିନ୍ତୁ ଏହାଦ୍ୱାରା ତାଙ୍କ ଧୈର୍ଯ୍ୟ ଓ ସ୍ଥିତପ୍ରଜ୍ଞତାର ପରୀକ୍ଷା ନିଆଯାଏ । ତେଣୁ ଦୁଃଖକଷ୍ଟ ଭୋଗ କରୁଥିବା ସମସ୍ତ ଲୋକମାନଙ୍କୁ ପାପୀ ବୋଲି ମନେକରିବା ବା ସବୁ ସୁଖୀଲୋକଙ୍କୁ ପୁଣ୍ୟବାନ୍ ବୋଲି ଭାବିବା ଏକ ଭୁଲ୍ ଧାରଣା । ମର୍ତ୍ତ୍ୟଲୋକର ସୁଖ ଦୁଃଖ ପୁଣ୍ୟବାନ୍ ବା ପାପୀ ହେବାର ମାନଦଣ୍ଡ ନୁହେଁ ।

ଦୁନିଆରେ ଅସଂଖ୍ୟ ଅପରାଧୀ ବଡ଼ ବଡ଼ ଅପରାଧ କରି ମଧ ନିର୍ଭୟରେ ଥାଆନ୍ତି ଏବଂ ଅନେକ ନିରୀହ ବିନା ଦୋଷରେ ଦୁଃଖକଷ୍ଟ ଭୋଗନ୍ତି । ଏଠି ଧନ, କ୍ଷମତା ବା ବାହୁବଳ ବ୍ୟବହାର କରି ବିଚାର ପ୍ରକ୍ରିୟାକୁ ମଧ ପ୍ରଭାବିତ କରାଯାଇପାରେ ।

ଯଦି ସଂସାରରେ କେବେ ଏମିତି ହୁଏ ଯେ କୌଣସି ଅପରାଧୀ ଗିରଫ ହୁଏ ଏବଂ ପୋଲିସ୍, ସାକ୍ଷୀ, ଓକିଲ ଓ ବିଚାରପତି—ସମସ୍ତେ ଈଶ୍ୱରଙ୍କୁ ସାକ୍ଷୀ ରଖି ନିଷ୍ପାପର ଭାବରେ ନିଜ ନିଜ କର୍ତ୍ତବ୍ୟ ପାଳନ କରନ୍ତି ଏବଂ ବିଚାର ମଧ ଈଶ୍ୱରଙ୍କ ବିଧାନ ଅନୁଯାୟୀ କରାଯାଇ ଦୋଷୀ ପ୍ରତି ଦଣ୍ଡବିଧାନ କରାଯାଏ, ତଥାପି ନ୍ୟାୟ ଅସମ୍ପୂର୍ଣ୍ଣ ରହିବ । ଆସନ୍ତୁ, ଗୋଟିଏ ଉଦାହରଣରୁ ଏହା ବୁଝିବାକୁ ଚେଷ୍ଟା କରିବା ।

ମନେକରନ୍ତୁ, ଜଣେ ଅହଂକାରୀ ଶାସକ ନିଜର ଯଶ ଓ କୀର୍ତ୍ତି ପାଇଁ ରାଜ୍ୟ ପରେ ରାଜ୍ୟ ଜୟ କରି ଚାଲିଲା । ଯୁଦ୍ଧରେ ସେ ହଜାର ହଜାର ଲୋକଙ୍କୁ

ହତ୍ୟା କଲା, ଲକ୍ଷ ଲକ୍ଷ ବିକଳାଙ୍ଗ ହେଲେ, ଅଗଣିତ ମହିଳା ବିଧବା ହେଲେ, ଅସଂଖ୍ୟ ପିଲା ଅନାଥ ହେଲେ ଏବଂ କୋଟି କୋଟି ଟଙ୍କାର ସମ୍ପତ୍ତି ନଷ୍ଟ ହେଲା । ଜଣେମାତ୍ର ବ୍ୟକ୍ତିର ଏହି କର୍ମ ଦ୍ୱାରା ଲକ୍ଷ ଲକ୍ଷ ଲୋକ ବର୍ଷ ବର୍ଷ ଧରି ଅକଥନୀୟ ଦୁଃଖ ଦୁର୍ଦ୍ଦଶା ଭୋଗିଲେ ।

ପୃଥିବୀର କେଉଁ ବିଚରାଳୟ ଏମାନେ ପାଇଥିବା ମାନସିକ, ଶାରିରିକ, ଆର୍ଥିକ ତଥା ଅନ୍ୟ କ୍ଷୟକ୍ଷତି ସବୁର ସଠିକ୍ ହିସାବ କରି ଅପରାଧୀର ପ୍ରତ୍ୟେକ ଅପରାଧ ପାଇଁ ତା' ପ୍ରତି ଉଚିତ ଦଣ୍ଡବିଧାନ କରିପାରିବ ? ଅତି ବେଶୀରେ ଆଇନ୍ ତାକୁ ଥରେମାତ୍ର ମୃତ୍ୟୁଦଣ୍ଡ ଦେଇପାରେ । ମୃତ୍ୟୁଦଣ୍ଡ ଦ୍ୱାରା ଅପରାଧୀକୁ ପୁନର୍ବାର ଅପରାଧ କରିବା ପାଇଁ ସୁଯୋଗ ଦିଆଗଲା ନାହିଁ ସତ, କିନ୍ତୁ କେବଳ ମୃତ୍ୟୁଦଣ୍ଡ ଦ୍ୱାରା ନ୍ୟାୟର ପରିପୂର୍ଣ୍ଣତା ମଧ ହେଲା ନାହିଁ । ଗୋଟିଏ ହତ୍ୟା ପାଇଁ ଥରେ ପ୍ରାଣଦଣ୍ଡ ଯୁକ୍ତିଯୁକ୍ତ, କିନ୍ତୁ ହଜାର ହଜାର ନରସଂହାର ପାଇଁ, ସହସ୍ର ବିଧବା, ବିକଳାଙ୍ଗ ଓ ଅନାଥ ସୃଷ୍ଟି କରିଥିବା ଅପରାଧ ପାଇଁ ମଧ ସମାନ ଦଣ୍ଡ ନ୍ୟାୟସଙ୍ଗତ ନୁହେଁ । ଏପରି ଅପରାଧୀକୁ ସହସ୍ର ପ୍ରାଣଦଣ୍ଡର ଯନ୍ତ୍ରଣା ଦିଆଯିବା ଉଚିତ ଯାହାକି ଏହି ଦୁନିଆରେ ସମ୍ଭବପର ନୁହେଁ । ଏହାଛଡ଼ା ଯେଉଁମାନଙ୍କ ପ୍ରତି ଅନ୍ୟାୟ ଓ ଅତ୍ୟାଚାର କରାଗଲା, ଯେଉଁ ପିତାମାତାମାନେ ସନ୍ତାନ ହରାଇଲେ, ଯେଉଁ ନାରୀମାନେ ବିଧବା ହେଲେ ବା ଯେଉଁ ପିଲାମାନେ ଅନାଥ ହୋଇଗଲେ, ସେମାନଙ୍କୁ ଉପଯୁକ୍ତ କ୍ଷତି ପୂରଣ ଦେବା ମଧ ଦୁନିଆର କୌଣସି ଆଇନ୍ ବ୍ୟବସ୍ଥାରେ ସମ୍ଭବପର ନୁହେଁ । ତା'ଛଡ଼ା ଯଦି ସେ ଅପରାଧୀ ଅଭିଯୁକ୍ତ ହୋଇ ଦଣ୍ଡ ପାଇବା ପୂର୍ବରୁ ନିଜକୁ ଗୁଳି କରି ହତ୍ୟା କରିଦିଏ, ତେବେ ତାକୁ କୌଣସି ଶାସ୍ତି ଦିଆଯାଇପାରିବ ନାହିଁ ।

ଆଜିକାଲି ଆତ୍ମଘାତୀ ବିସ୍ଫୋରଣର ଖବର ନିୟମିତ ଶୁଣିବାକୁ ମିଳୁଛି । ଜଣେ ବ୍ୟକ୍ତି ଅନେକ ନିରୀହ ଜୀବନ ଓ ବହୁମୂଲ୍ୟ କୋଠାବାଡ଼ି, ଯାନବାହନ ଇତ୍ୟାଦି ନିମିଷେକ ମଧରେ ଧ୍ୱଂସ କରି ନିଜକୁ ମଧ ଶେଷ କରିଦିଏ । ଏଭଳି ବ୍ୟକ୍ତିକୁ କ'ଣ କୌଣସି ବିଚାରାଳୟ ବା କୌଣସି ଆଇନ୍ ଦଣ୍ଡିତ କରିପାରିବ ?

ଆଉ ଗୋଟିଏ ଉଦାହରଣ ଦେଖିବା । ଧରନ୍ତୁ, ଜଣେ ବ୍ୟକ୍ତିର ଘରେ କେହି ଦୁର୍ବୃତ୍ତ ନିଆଁ ଲଗାଇଦେଲା । ଘର ପୋଡ଼ିଯିବା ଫଳରେ ସେ ଗରିବ ବ୍ୟକ୍ତିଟି ମୁଣ୍ଡଗୁଞ୍ଜିବା ଜାଗା ଖଣ୍ଡିକ ହରାଇଲା । ତା' ପୁତ୍ର ଓ ପତ୍ନୀ ନିଆଁରେ

ପୋଡ଼ିହୋଇ ମରିଗଲେ ଏବଂ ବିବାହଯୋଗ୍ୟ ଝିଅଟି ବିକଳାଙ୍ଗ ହୋଇଗଲା । ଏହାଛଡ଼ା ଝିଅ ବାହାଘର ପାଇଁ ବଡ଼ କଷ୍ଟରେ ସାଇତି ରଖିଥିବା ଟଙ୍କାପଇସା ଓ ଆସବାବପତ୍ର ମଧ୍ୟ ପୋଡ଼ି ନଷ୍ଟ ହୋଇଗଲା ।

ନିଆଁ ଲଗାଇଥିବା ବ୍ୟକ୍ତିର ଆଇନ୍ ଆଖିରୁ ଖସିଯିବାର ଅନେକ ସମ୍ଭାବନା ଅଛି । ହୁଏତ ସେ ଆଦୌ ଧରା ନ ପଡ଼ିପାରେ । ଯଦି ଧରାପଡ଼ି ଅଭିଯୁକ୍ତ ହୁଏ, ତେବେ ସାକ୍ଷୀ-ପ୍ରମାଣ ବା ବିଚାର ପ୍ରକ୍ରିୟା ଯେ ଦୁର୍ନୀତି ପ୍ରଭାବରୁ ମୁକ୍ତ ରହିବ ଏହା କୁହାଯାଇ ନପାରେ । ଅଭିଯୋଗ ପ୍ରମାଣିତ ନ ହେଲେ ସେ ପ୍ରମାଣ ଅଭାବରୁ ଖଲାସ ମଧ୍ୟ ହୋଇପାରେ । ଆଉ ଯଦି ପ୍ରକୃତରେ ବିଚାର ହୁଏ, ତେବେ କେଉଁ ବିଚାରାଳୟ ଏହି ସର୍ବସ୍ୱ ହରାଇଥିବା ବ୍ୟକ୍ତିଟିର ଘରଦ୍ୱାର, ଧନସମ୍ପତ୍ତି, ପତ୍ନୀ ଓ ପୁତ୍ରକୁ ଫେରାଇପାରିବ ? କେଉଁ ଅଦାଲତ ତା' ପତ୍ନୀ ଓ ପୁତ୍ରର ଅଭାବ ପୂରଣ କରିପାରିବ ବା ତା' ଝିଅର ବିକଳାଙ୍ଗ ଅବସ୍ଥା ଦୂର କରିପାରିବ ? ସେ ବିଚରା ସାରା ଜୀବନ ଯେଉଁ ଆର୍ଥିକ ଓ ମାନସିକ ଯନ୍ତ୍ରଣା ଭୋଗିବ ତାକୁ ଠିକ୍ ଠିକ୍ ଆକଳନ କରି ଅପରାଧୀକୁ ଉପଯୁକ୍ତ ଶାସ୍ତି କିଏ ଦେଇପାରିବ ?

କୌଣସି ସମାଜରେ ଘଟୁଥିବା ସବୁ କୁକର୍ମଗୁଡ଼ିକ ଲୋକଲୋଚନକୁ ଆସେ ନାହିଁ ଏବଂ ଲୋକଲୋଚନକୁ ଆସୁଥିବା ସବୁ ଅପରାଧଗୁଡ଼ିକ ମଧ୍ୟ ନ୍ୟାୟାଳୟ ପର୍ଯ୍ୟନ୍ତ ଆସିପାରେ ନାହିଁ । ଅନେକ ବ୍ୟକ୍ତି ନିଜର ବା ପରିବାରର ମାନସମ୍ମାନ ଦୃଷ୍ଟିରୁ ନିଜ ପ୍ରତି ହୋଇଥିବା ଅନ୍ୟାୟ ଅତ୍ୟାଚାରକୁ ପ୍ରକାଶ କରନ୍ତି ନାହିଁ । ଏହାଛଡ଼ା ଅନେକ ଦରିଦ୍ରବ୍ୟକ୍ତି ପଇସା ଅଭାବରୁ ମଧ୍ୟ କୋର୍ଟକଚେରୀକୁ ଆସିବା ପାଇଁ ସମର୍ଥ ହୁଅନ୍ତି ନାହିଁ । ଏମାନେ ଆଖିର ଲୁହ ଆଖିରେ ପୋଛିଦେଇ ଅତ୍ୟାଚାର ସହିଯାଆନ୍ତି । ଏଭଳି ବ୍ୟକ୍ତିମାନେ ନ୍ୟାୟ କିପରି ପାଇବେ ?

ଅନେକ କ୍ଷେତ୍ରରେ ଅପରାଧୀମାନେ ବଡ଼ ବଡ଼ ଅପରାଧ ଘଟାଇ ମଧ୍ୟ ଜୀବନସାରା ଆଇନ୍ ହାତରେ ଧରାପଡ଼ନ୍ତି ନାହିଁ । ସେମାନଙ୍କ କୁକର୍ମ ସମାଜକୁ ଭୀଷଣ କ୍ଷତିଗ୍ରସ୍ତ କରେ; କିନ୍ତୁ କର୍ତ୍ତା କିଏ, ଏହା ଜାଣି ହୁଏନାହିଁ । ଏଭଳି ଅପରାଧୀମାନଙ୍କୁ କିପରି ପ୍ରତିଫଳ ଦିଆଯାଇପାରିବ ?

ନ୍ୟାୟର ସିଦ୍ଧାନ୍ତ ଅନୁଯାୟୀ ଅପରାଧରେ ସହଯୋଗ କରିବା ମଧ୍ୟ ଏକ ଅପରାଧ ଏବଂ ଯେଉଁମାନେ ଅପରାଧୀକୁ ସାହାଯ୍ୟ କରନ୍ତି, ସେମାନେ ମଧ୍ୟ

ଦଣ୍ଡ ପାଇବା ଯୋଗ୍ୟ । ଉଦାହରଣ ସ୍ୱରୂପ, ଜଣେ ବ୍ୟଭିଚାରୀ ଯେଉଁମାନଙ୍କର କୁଶିକ୍ଷା ଓ ପ୍ରରୋଚନା ଦ୍ୱାରା ପ୍ରଭାବିତ ହୋଇ ଏଭଳି ଜଘନ୍ୟ କାର୍ଯ୍ୟ କରେ, ଯେଉଁମାନେ ଅଶ୍ଳୀଳ ଚଳଚ୍ଚିତ୍ର ନିର୍ମାଣ କରନ୍ତି, ଯେଉଁମାନେ ଏହାର ବ୍ୟବସାୟ କରନ୍ତି, ଯେଉଁମାନେ ଟିଭି ବା ଚଳଚ୍ଚିତ୍ରରେ ଉତ୍ତେଜକ ଦୃଶ୍ୟ ପ୍ରଦର୍ଶନ କରନ୍ତି, ଯେଉଁ ମହିଳାମାନେ ନଗ୍ନତାର ପ୍ରଦର୍ଶନ କରି ମଣିଷ ମନରେ ବାସନାର ଉଦ୍ରେକ କରନ୍ତି, ଯେଉଁମାନେ ଅଶ୍ଳୀଳତାର ପ୍ରସାରରେ କୌଣସି ପ୍ରକାର ସହଯୋଗ କରନ୍ତି ଏବଂ ଯେଉଁମାନେ ସାମର୍ଥ୍ୟ ସତ୍ତ୍ୱେ ଏଭଳି ଅନୈତିକତାକୁ ରୋକନ୍ତି ନାହିଁ, ଏମାନେ ସମସ୍ତେ ମଧ୍ୟ ଅପରାଧୀ ଏବଂ ଦଣ୍ଡିତ ହେବା ଯୋଗ୍ୟ । ଜଣେ ବ୍ୟକ୍ତିର ଚରିତ୍ରକୁ ନଷ୍ଟ କରିବାରେ ଯିଏ ଯେଉଁ ପରିମାଣରେ ଦାୟୀ, ସେ ସେହି ଅନୁସାରେ ଶାସ୍ତି ପାଇବା ଉଚିତ । ସମାଜର ଏଭଳି ନୈତିକ ଅଧଃପତନରେ ପୃଥିବୀର ଅସଂଖ୍ୟ ଲୋକ ସଂଶ୍ଳିଷ୍ଟ ଥାଆନ୍ତି, ଯେଉଁମାନଙ୍କୁ ଚିହ୍ନଟ କରିବା, ସେମାନଙ୍କ କର୍ମର ପ୍ରକୃତ ମୂଲ୍ୟାୟନ କରିବା ବା ସେମାନଙ୍କ ପ୍ରତି ଦଣ୍ଡବିଧାନ କରିବାର କୌଣସି ସୁଯୋଗ ଭୂଲୋକରେ ନାହିଁ ।

ମଣିଷର କ୍ଷଣସ୍ଥାୟୀ ଜୀବନ ମଧ୍ୟ ସଂସାରରେ ନ୍ୟାୟ ନ ମିଳିବାର ଅନ୍ୟତମ କାରଣ । ଜଣେ ବ୍ୟକ୍ତିର ଭଲ ବା ମନ୍ଦ କର୍ମର ପ୍ରଭାବ ସମାଜରେ ଶହ ଶହ ବର୍ଷ ଧରି ରହେ । ଏହି ଦୁନିଆରେ କର୍ମଫଳ ପାଇବା ପାଇଁ ହେଲେ ତାକୁ ଶହ ଶହ ବର୍ଷ ବଞ୍ଚିରହିବାକୁ ପଡ଼ିବ, ଯାହାକି ସଂସାରର ପ୍ରାକୃତିକ ନିୟମ ଅନୁଯାୟୀ ସମ୍ଭବ ନୁହେଁ ।

ଉଦାହରଣ ସ୍ୱରୂପ, ଜଣେ ଡକାୟତ ଗୋଟିଏ ଗ୍ୟାଙ୍ଗ୍ ଗଢ଼ି ଡକାୟତି କଲା ଏବଂ ଏହାର ବିଭିନ୍ନ କଳକୌଶଳ ବିଷୟରେ ଶିଷ୍ୟମାନଙ୍କୁ ଶିକ୍ଷା ଦେଲା । ଶିଷ୍ୟମାନେ ମଧ୍ୟ ସେହି କାର୍ଯ୍ୟ କଲେ ଏବଂ ଧିରେ ଧିରେ ଏହା ବିଭିନ୍ନ ସହରରେ ନିଜର କାୟା ବିସ୍ତାର କରିଚାଲିଲା । ଏ ଧରଣର କାର୍ଯ୍ୟ ଅସଂଖ୍ୟ ଲୋକଙ୍କୁ କ୍ଷତିଗ୍ରସ୍ତ କରେ ଏବଂ ଏହାର ପ୍ରଭାବ ମଧ୍ୟ ଦୀର୍ଘଦିନ ପର୍ଯ୍ୟନ୍ତ ରହେ । ଯେପର୍ଯ୍ୟନ୍ତ କାର୍ଯ୍ୟ ଚାଲିଥିବ ଏବଂ ଜନସାଧାରଣ କ୍ଷତିଗ୍ରସ୍ତ ହେଉଥିବେ, ସେପର୍ଯ୍ୟନ୍ତ କର୍ମଶାଳାର ମୁଖ୍ୟ ସୂତ୍ରଧରର ଖାତାରେ ପାପଭାର ବଢ଼ି ଚାଲିଥିବ । ମୃତ୍ୟୁ ପରେ ମଧ୍ୟ ସେ ବ୍ୟକ୍ତିର କର୍ମପଞ୍ଜିକା ଖୋଲାଥାଏ ।

ସେହିପରି ଜଣେ ବ୍ୟକ୍ତି ନକଲି ଔଷଧ ପ୍ରସ୍ତୁତି କାରଖାନା ତିଆରି କର ସହସ୍ର ଜନତାଙ୍କ ଜୀବନ ସହ ଖେଳେ ଏବଂ ଧୀରେ ଧୀରେ ତା'ଦ୍ୱାରା ପ୍ରସ୍ତୁତ

ନକଲି ଔଷଧ ବିଭିନ୍ନ ସହରରେ ବିକ୍ରି ହୁଏ । ଏହା ଫଳରେ କେତେ ଯେ ଲୋକଙ୍କର ଜୀବନ ବିପନ୍ନ ହୁଏ, ତାହା କଳନା କରିବା ସମ୍ଭବ ନୁହେଁ । ଏଭଳି ଏକ ସାଂଘାତିକ ଅପରାଧର ମଞ୍ଜି ବୁଣିଦେଇ ସେ ବ୍ୟକ୍ତି ମରିଯାଏ; କିନ୍ତୁ ତା' କର୍ମ ପାପ ଅର୍ଜନ କରିଚାଲିଥାଏ । ଏପ୍ରକାର କର୍ମର ପ୍ରତିଫଳ ଯଦି ମଣିଷକୁ ଏହି ଜୀବନରେ ଦିଆଯାଆନ୍ତା, ତେବେ ତାକୁ ତା' କର୍ମର କୁପ୍ରଭାବ ସମ୍ପୂର୍ଣ୍ଣ ସମାପ୍ତ ହେବା ପର୍ଯ୍ୟନ୍ତ ଜୀବିତ ରହିବାକୁ ପଡ଼ନ୍ତା, ଯାହା ସଂସାରର ନିୟମ ଅନୁଯାୟୀ ସମ୍ଭବ ନୁହେଁ ।

ଏହିପରି ଅନେକ ପୁଣ୍ୟ କାର୍ଯ୍ୟଗୁଡ଼ିକର ସୁପ୍ରଭାବ ମଧ୍ୟ ସମାଜରେ ଦୀର୍ଘଦିନ ଧରି ରହେ । ମନେ କରନ୍ତୁ, ଜଣେ ବ୍ୟକ୍ତି ଅନାଥାଶ୍ରମ ବା ଦାତବ୍ୟ ଚିକିତ୍ସାଳୟଟିଏ ଖୋଲିଦେଲା । ଯେପର୍ଯ୍ୟନ୍ତ ଏହି ଜନହିତକର ଅନୁଷ୍ଠାନଟି ବଞ୍ଚିଥିବ ଏବଂ ସମାଜ ତା' ଦ୍ୱାରା ଉପକୃତ ହେଉଥିବ, ତା' କର୍ମ ପଞ୍ଜିକାରେ ପୁଣ୍ୟର ମାତ୍ରା ବଢ଼ି ବଢ଼ି ଚାଲିଥିବ । ତା' ମୃତ୍ୟୁ ପରେ ମଧ୍ୟ ତା' ଖାତାରେ ପୁଣ୍ୟ ଜମା ହେଉଥିବ । ଏଭଳି ବ୍ୟକ୍ତିକୁ ଏହି ଜୀବନରେ କର୍ମଫଳ ଦେବା କିପରି ସମ୍ଭବ ଯାହାର ଜୀବନଦୀପ ଲିଭିସାରିଛି; କିନ୍ତୁ ତା' ସତ୍‌କର୍ମ ପୁଣ୍ୟ ମଧ୍ୟ ଅର୍ଜନ କରିଚାଲିଛି ।

ଏହାବ୍ୟତୀତ ନୈତିକତା ସମ୍ବନ୍ଧୀୟ ଅନେକ ଆଚରଣ ରହିଛି, ଯାହାର ପ୍ରତିଦାନ ଏ ଦୁନିଆରେ ମିଳିପାରେ ନାହିଁ । ମନେକରନ୍ତୁ, ଯଦି ଜଣେ ବ୍ୟକ୍ତି ବାପା-ମାଆ ବା ଗୁରୁଜନଙ୍କ ପ୍ରତି ରୁକ୍ଷ ବ୍ୟବହାର କରେ ବା ମିଛୁଆ, ଅହଂକାରୀ, ପରନିନ୍ଦୁକ, ହିଂସୁକ ବା କପଟୀ ହୋଇଥାଏ, ତେବେ ଏଗୁଡ଼ିକ ଆଇନ୍ ପରିସରଭୁକ୍ତ ନ ହୋଇଥିବାରୁ ଆଇନ୍ ତାକୁ ଦଣ୍ଡ ମଧ୍ୟ ଦେଇପାରେ ନାହିଁ । ସେହିପରି ଅବିଶ୍ୱାସ, ଅନ୍ଧବିଶ୍ୱାସ ଏବଂ କୁସଂସ୍କାର ଆଦି ବିଶ୍ୱାସ ସମ୍ବନ୍ଧୀୟ କର୍ମଗୁଡ଼ିକର ପ୍ରତିଦାନ ମଧ୍ୟ ଏହି ସଂସାରରେ ମିଳିପାରେ ନାହିଁ ।

ଏଗୁଡ଼ିକ ନ୍ୟାୟର କେତୋଟି ମୁଖ୍ୟ ଆବଶ୍ୟକତା, ଯାହା ମନୁଷ୍ୟକୁ ପୁନର୍ଜୀବିତ କରିବା ବ୍ୟତୀତ ଅନ୍ୟ କୌଣସି ଉପାୟରେ ଆଦୌ ପୂରଣ ହୋଇପାରିବ ନାହିଁ । ଏଥିପାଇଁ ଭିନ୍ନ ପ୍ରାକୃତିକ ନିୟମ ସହ ଅନ୍ୟ ଏକ ଦୁନିଆର ଆବଶ୍ୟକତା ରହିଛି, ଯାହାକୁ ସ୍ରଷ୍ଟା ଅବଶ୍ୟ ସୃଷ୍ଟି କରିବେ । ସେଠାରେ ସଂସାରକୁ ପଠାଯାଇଥିବା ସମସ୍ତ ନରନାରୀଙ୍କୁ ହାଜର କରାଯିବ ।

ମୁଦେଇ ମୁଦାଲା ଓ ସାକ୍ଷୀମାନେ ଉପସ୍ଥିତ ରହିବେ । ବିଭିନ୍ନ ଯୁଗରେ ମାନବଜଗତକୁ ସତର୍କ କରିବା ପାଇଁ ପଠାଯାଇଥିବା ଈଶ୍ୱରଙ୍କର ମହାମାନ୍ୟ ଧର୍ମଦୂତଗଣ ମଧ୍ୟ ଉପସ୍ଥିତ ରହିବେ ଏବଂ ସମସ୍ତଙ୍କର କର୍ମପଞ୍ଜିକା ମଧ୍ୟ ବନ୍ଦ ହୋଇ ସାରିଥିବ । ସେଠାରେ ଲାଞ୍ଚ ମିଛ ଚଳୁନଥିବ, ବାହୁବଳ ଓ ପ୍ରତିପତ୍ତି କାମ କରୁ ନଥିବ ଏବଂ ହଜାର ନରହତ୍ୟା ପାଇଁ ହଜାର ଥର ମୃତ୍ୟୁଦଣ୍ଡ ଦିଆଯାଇପାରୁଥିବ । ଈଶ୍ୱରଙ୍କ ଦରବାରରେ ପ୍ରତ୍ୟେକ ବ୍ୟକ୍ତିଙ୍କର ବିଚାର ହେବ । ଯେଉଁମାନଙ୍କ ପୁଣ୍ୟଭାର ଅଧିକ ହେବ, ସେମାନେ ସଫଳ ହେବେ ଏବଂ ଯେଉଁମାନଙ୍କର ପାପଭାର ଅଧିକ ହେବ, ସେମାନେ ବିଫଳ ହେବେ । ସେଇ ଅନୁସାରେ ସେମାନଙ୍କୁ ନିଜ ନିଜର କର୍ମଫଳ ଭୋଗ କରିବା ପାଇଁ ସ୍ୱର୍ଗ ବା ନର୍କକୁ ପଠାଇ ଦିଆଯିବ ।

ଜଣେ ବୁଦ୍ଧିମାନ ବ୍ୟକ୍ତି ସହଜରେ ଏହା ବୁଝିପାରିବେ ଯେ, ପ୍ରକୃତ ନ୍ୟାୟ କେବଳ ଏହି ଉପାୟରେ ସମ୍ଭବ ହୋଇପାରେ ଏବଂ ମଣିଷ ପୁନର୍ଜୀବିତ ନ ହୋଇ କଦାପି ନିଜ କର୍ମଫଳ ପାଇପାରିବ ନାହିଁ । ପୁନର୍ଜୀବନ ମୃତ୍ୟୁ ଭଳି ଅଟଳ ସତ୍ୟ । ଏହା ଜଗତକର୍ତ୍ତାଙ୍କର ସେହି ପୁରାତନ ଦିବ୍ୟବାର୍ତ୍ତା ଯାହାର ପ୍ରଚାର ପ୍ରତ୍ୟେକ ଯୁଗରେ ଦିବ୍ୟଗ୍ରନ୍ଥଗୁଡ଼ିକ କରିଛନ୍ତି ଏବଂ ଯାହା ବିଷୟରେ ଈଶ୍ୱରଙ୍କ ସମସ୍ତ ମହାମାନ୍ୟ ମାର୍ଗଦର୍ଶକମାନେ ସତର୍କ କରିଯାଇଛନ୍ତି । ପବିତ୍ର କୁର୍‌ଆନ ଅନ୍ତିମ ବିଚାର ଦିବସର ଦୃଶ୍ୟ ନିମ୍ନମତେ ବର୍ଣ୍ଣନା କରିଛି :

> ''ଧରିତ୍ରୀ ନିଜ ପାଳନକର୍ତ୍ତାଙ୍କ ଜ୍ୟୋତିରେ ଉଦ୍‌ଭାସିତ ହୋଇଉଠିବ, (ସମସ୍ତଙ୍କର) କର୍ମପତ୍ର ଉପସ୍ଥାପିତ କରାଯିବ; ଧର୍ମଦୂତ ଓ ସାକ୍ଷୀମାନଙ୍କୁ ହାଜର କରାଯିବ; (ଏବଂ) ତତ୍‌ପରେ ଲୋକମାନଙ୍କ ମଧ୍ୟରେ ନ୍ୟାୟପୂର୍ବକ ବିଚାର କରିଦିଆଯିବ ଏବଂ ସେମାନଙ୍କ ପ୍ରତି କୌଣସି ଅନ୍ୟାୟ କରାଯିବ ନାହିଁ । ଆଉ ପ୍ରତ୍ୟେକ ବ୍ୟକ୍ତି ଯାହା କରିଥିବ, ତଦନୁଯାୟୀ ତାକୁ ପୂର୍ଣ୍ଣମାତ୍ରାରେ (ପ୍ରତିଦାନ) ଦିଆଯିବ; ଏବଂ ଲୋକମାନେ ଯାହାକିଛି କରନ୍ତି ସେ ଖୁବ୍ ଭଲଭାବେ ଜାଣନ୍ତି । ଆଉ ଅବିଶ୍ୱାସ କରିଥିବା ଲୋକମାନଙ୍କୁ ଦଳଦଳ କରି ଘଉଡ଼ାଇ ନିଆଯିବ ଏବଂ ସେମାନଙ୍କୁ ସେଠାକାର ରକ୍ଷୀମାନେ ପ୍ରଶ୍ନ କରିବେ, ''କ'ଣ ତୁମମାନଙ୍କ

ନିକଟକୁ ତୁମ୍ଭମାନଙ୍କ ମଧ୍ୟରୁ (ଏପରି କେହି) ବାର୍ତ୍ତାବହ ଆସି ନଥିଲେ ଯେଉଁମାନେ ତୁମମାନଙ୍କୁ ତୁମ ପାଳନକର୍ତ୍ତାଙ୍କ ନିର୍ଦ୍ଦେଶମାନ ପଢ଼ି ଶୁଣାଉ ନଥିଲେ ଏବଂ ଏହି ଦିନର ସାକ୍ଷାତ ସମ୍ବନ୍ଧରେ ତୁମ୍ଭମାନଙ୍କୁ ସଚେତନ କରାଉ ନଥିଲେ ?'' ସେମାନେ ଉତ୍ତର ଦେବେ–'ହଁ, ଅବଶ୍ୟ (ଏପରି ହୋଇଥିଲା), କିନ୍ତୁ ଏହି ଶାସ୍ତିର (ଭବିଷ୍ୟ) ବାଣୀ ଅବିଶ୍ୱାସ କରିଥିବା ଲୋକମାନଙ୍କ ପ୍ରତି ପ୍ରମାଣିତ ହୋଇଗଲା ।'

ସେମାନଙ୍କୁ କୁହାଯିବ, 'ନର୍କର ଦ୍ୱାର ଦେଇ ପ୍ରବେଶ କର; (ଯେଉଁଠାରେ) ଚିରକାଳ ରହିବ ।' ସୁତରାଂ ଅହଂକାରୀମାନଙ୍କ ପାଇଁ ଏହା ଏକ ଅତି କଦର୍ଯ୍ୟ ସ୍ଥାନ । ଆଉ ଯେଉଁମାନେ ନିଜ ପ୍ରଭୁଙ୍କୁ ଭୟ କରୁଥିଲେ, ସେମାନଙ୍କୁ ଦଳବଦ୍ଧ ଭାବରେ ସ୍ୱର୍ଗଆଡ଼େ ପାଛୋଟି ନିଆଯିବ । ଏପରିକି ଯେତେବେଳେ ସେମାନେ ସେଠାରେ ପହଞ୍ଚିବେ, ସେତେବେଳେ ତା'ର ଦ୍ୱାର ଉନ୍ମୁକ୍ତ କରାଯିବ ଏବଂ ସେଠାର ପ୍ରବନ୍ଧକମାନେ ସେମାନଙ୍କୁ କହିବେ, 'ତୁମ୍ଭମାନଙ୍କ ପ୍ରତି ସର୍ବଦା ଶାନ୍ତି ହେଉ, ତୁମେ ଆନନ୍ଦରେ ରୁହ (ଏବଂ) ଚିରକାଳ ଲାଗି ଏଥିରେ (ବୈକୁଣ୍ଠରେ) ପ୍ରବେଶ କର ।' ସେମାନେ କହିବେ, 'ସବୁ ପ୍ରଶଂସା ଅଲ୍ଲାହ୍‌ଙ୍କ ପାଇଁ ଯିଏ ଆମ୍ଭମାନଙ୍କ ସହ କରିଥିବା ଅଙ୍ଗୀକାର ପୂରଣ କରିଛନ୍ତି । (ବର୍ତ୍ତମାନ) ଆମେ ବୈକୁଣ୍ଠରେ ଯେଉଁଠାରେ ଇଚ୍ଛା ରହିବୁ ।' ଅତଏବ ସତ୍‌କର୍ମ କରୁଥିବା ଲୋକମାନଙ୍କ ନିମନ୍ତେ ସର୍ବୋତ୍ତମ ପ୍ରତିଦାନ ରହିଛି ।''

କୁର୍‌ଆନ ୩୯ : ୬୯-୭୪



# ମାନବ ଜୀବନରେ ଉତ୍ତରଦାୟିତ୍ୱବୋଧର ପ୍ରଭାବ

ମଣିଷ ଜୀବନରେ ଉତ୍ତରଦାୟିତ୍ୱବୋଧର ଅତି ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଏହା ତାକୁ କିଛି ନୀତିନିୟମ ସହିତ ବାନ୍ଧି ରଖେ । ଯିଏ ପୁନର୍ଜୀବନର ସତ୍ୟକୁ ଉପଲବ୍ଧି କରେ, ତା' ହୃଦୟ ମଧ୍ୟରେ ଗୋଟିଏ ପୋଲିସ ଷ୍ଟେସନ୍ ଖୋଲିଯାଏ । ଈଶ୍ୱରଙ୍କ ପ୍ରତି ଅଜଣା ଭୟ ତା' କର୍ମଗୁଡ଼ିକୁ ସ୍ୱତଃପ୍ରବୃତ୍ତ ଭାବେ ନିୟନ୍ତ୍ରିତ କରେ । ସେ ସ୍ରଷ୍ଟା ଓ ତାଙ୍କ ସୃଷ୍ଟିର ପ୍ରାଣୀମାନଙ୍କ ଅଧିକାର ସମ୍ପର୍କରେ ସଚେତନ ହୁଏ, ଯାହା ତାକୁ ଶୁଦ୍ଧ ଓ ଶୃଙ୍ଖଳିତ କରିଥାଏ । ବ୍ୟକ୍ତି ଶୃଙ୍ଖଳିତ ହେଲେ ସମାଜରେ ମଧ୍ୟ ଶାନ୍ତି ଓ ଶୃଙ୍ଖଳା ଆସେ ।

ଯଦି ଜଣେ ବ୍ୟକ୍ତି କୌଣସି ଅପରାଧ କଲାବେଳେ ଜାଣିନିଏ ଯେ, ପୋଲିସ୍ ତା' ଉପରେ ନଜର ରଖିଛି ଏବଂ ଅପରାଧ କରି ସେ କଦାପି ଖସିଯାଇପାରିବ ନାହିଁ, ତେବେ ଅପରାଧ କରିବାର ଇଚ୍ଛା ଥିଲେ ମଧ୍ୟ ସେ କରିବ ନାହିଁ । ଉଦାହରଣ ସ୍ୱରୂପ, ଜଣେ ସରକାରୀ କର୍ମଚାରୀ ଲାଞ୍ଚ ନେବାକୁ ଚାହୁଁଥିବା ବେଳେ କୌଣସିମତେ ଖବର ପାଇଲା ଯେ, ସି.ବି.ଆଇ. ତାକୁ ଅନୁସରଣ କରୁଛି । ଏହା ଜାଣିବାମାତ୍ରେ ତା' ମନରେ ଏମିତି ଭୟ ସୃଷ୍ଟି ହେବ ଯେ, ଲାଞ୍ଚ ନେବାର ଇଚ୍ଛା ମୁହୂର୍ତ୍ତକ ମଧ୍ୟରେ ଉଭେଇଯିବ । ସେହିପରି ଯେଉଁମାନେ ନିଜର ଉତ୍ତରଦାୟିତ୍ୱ ସମ୍ପର୍କରେ ଜାଣିନିଅନ୍ତି, ସେମାନେ ଏହା ମଧ୍ୟ ବୁଝିନିଅନ୍ତି ଯେ ହୁଏତ ସେମାନେ ସମାଜକୁ ଫାଙ୍କି ଦେଇପାରନ୍ତି, ପୋଲିସ୍ ଆଖିରେ ଧୂଳି ଦେଇପାରନ୍ତି ବା ଆଇନ୍ ହାତରୁ ଖସି ଯାଇପାରନ୍ତି, କିନ୍ତୁ ସର୍ବଦ୍ରଷ୍ଟା ଈଶ୍ୱରଙ୍କ ଆଖିରେ ଧୂଳି ଦେବା ସମ୍ଭବ ନୁହେଁ, କିମ୍ବା ତାଙ୍କ ଭଳି ସର୍ବଶକ୍ତିମାନଙ୍କ ହାତରୁ ଖସିଯିବା ମଧ୍ୟ ସମ୍ଭବ ନୁହେଁ ।

ଏଭଳି ଈଶ୍ୱରବିଶ୍ୱାସୀ ଭକ୍ତମାନଙ୍କ ପାଇଁ ଥାନା ପୋଲିସ୍‌ର ମଧ୍ୟ ଦରକାର ନାହିଁ, କାରଣ ସବୁଠାରୁ ବଡ଼ ପୋଲିସ୍ ତାଙ୍କ ମନ ଭିତରେ ପହରା ଦିଏ ଏବଂ

ସେ ଏଭଳି ପହରା ଦିଏ ଯେ ମଣିଷ ଏକାନ୍ତରେ ମଧ୍ୟ ପାପ କରିବାକୁ ଭୟ କରେ ।

ଈଶ୍ୱରଙ୍କ ପ୍ରତି ଉତ୍ତରଦାୟିତ୍ୱବୋଧର ବିଶ୍ୱାସ ବ୍ୟତୀତ ପୃଥିବୀର କୌଣସି ଶକ୍ତି ମଣିଷକୁ ଶୁଦ୍ଧ ଓ ଶୃଙ୍ଖଳିତ କରିପାରିବ ନାହିଁ କିମ୍ବା ଅପରାଧରୁ ବିରତ କରିପାରିବ ନାହିଁ । ଆସନ୍ତୁ ଗୋଟିଏ ଉଦାହରଣ ଦେଖିବା ।

ଜଣେ ଲୋକ ଲକ୍ଷେ ଟଙ୍କା ଧରି କୌଣସି ଏକ ଦୂର ସହରକୁ ବ୍ୟବସାୟ ଉଦ୍ଦେଶ୍ୟରେ ଯାଉଥିଲେ । ବାଟରେ ଆଉ ଜଣେ ବ୍ୟକ୍ତିଙ୍କ ସହ ତାଙ୍କର ସାକ୍ଷାତ ହେଲା । ସେ ମଧ୍ୟ ସେହି ସହରକୁ କିଛି କାମଧନ୍ଦା ଯୋଗାଡ଼ କରିବା ଉଦ୍ଦେଶ୍ୟରେ ବାହାରିଥିଲେ । ତେଣୁ ଦୁହେଁ ସାଙ୍ଗ ହୋଇ ଯାତ୍ରା କଲେ ଏବଂ ଉଭୟଙ୍କ ମଧ୍ୟରେ ଧିରେ ଧିରେ ଘନିଷ୍ଠତା ମଧ୍ୟ ବଢ଼ିଲା । ହଠାତ୍ ଏକ ନିର୍ଜନ ସ୍ଥାନରେ ବ୍ୟବସାୟୀ ଜଣକ ଛାତିରେ ପ୍ରବଳ ଯନ୍ତ୍ରଣା ଅନୁଭବ କଲେ । ରାତି ସମୟ । ନିଛାଟିଆ ଜାଗା । ସହଯାତ୍ରୀ ଜଣକ ମଧ୍ୟ ବ୍ୟସ୍ତ ହୋଇପଡ଼ିଲେ; କିନ୍ତୁ ରୋଗୀକୁ ସାନ୍ତ୍ୱନା ଦେବାଛଡ଼ା ଆଉ କିଛି କରିପାରୁ ନଥିଲେ । ବ୍ୟବସାୟୀଙ୍କ ଯନ୍ତ୍ରଣା ବଢ଼ିଚାଲିଲା । ସେ ସହଯାତ୍ରୀ ବନ୍ଧୁଙ୍କ ହାତ ନିଜ ହାତରେ ଧରି କହିଲେ—''ଭାଇ ! ମୁଁ ବୋଧହୁଏ ଆଉ ବଞ୍ଚିବି ନାହିଁ । ଯଦି ମୁଁ ମରିଯାଏ, ତେବେ ମୋର ଗୋଟିଏ କାମ କରିଦେବ । ମୋ ବ୍ୟାଗରେ ଏକଲକ୍ଷ ଟଙ୍କା ଅଛି, ଯାହା ମୁଁ ଧାରଉଧାର କରି ଏବଂ ସ୍ତ୍ରୀର ଗହଣା ବିକି ଆଣିଥିଲି । ମୁଁ ମୋ ଘର ଠିକଣା ଦେଉଛି । ମୋ ସ୍ତ୍ରୀ-ପିଲାଙ୍କ ପାଖରେ ଏ ଟଙ୍କା ପହଞ୍ଚାଇଦେବ । ମୁଁ ତ ଯାଉଛି, ଯଦି ଏ ଟଙ୍କାତକ ସେମାନଙ୍କୁ ନ ମିଳେ, ସେମାନଙ୍କର ଆଉ କେହି ନାହିଁ, ମୋ ପିଲା ଉଚ୍ଛନ୍ନ ହୋଇଯିବେ । ଏ ବିପଦରେ ତୁମ ଛଡ଼ା ମୋର ଆଉ କିଏ ଅଛି ? ଈଶ୍ୱର ତୁମକୁ ସହାୟ ହୁଅନ୍ତୁ ।'' ଘର ଠିକଣାଟି କହିଦେଲା ପରେ ବ୍ୟବସାୟୀ ଜଣକର ମୃତ୍ୟୁ ହୋଇଗଲା ।

ସହଯାତ୍ରୀ ଜଣକ କ'ଣ କରିବେ ବା ନ କରିବେ କିଛି ଜାଣିପାରୁ ନ ଥାନ୍ତି । କିଛି ସମୟ ପରେ ତାଙ୍କ ମନରେ ଦୁର୍ଭାବନା ଆସିଲା ଯେ, ମୁଁ ତ ଗରିବ ଲୋକ । ନିଜ ପିଲାଛୁଆଙ୍କୁ ଦି'ଓଳି ପେଟପୁରା ଖାଇବାକୁ ଦେଇପାରୁନି । କାମଧନ୍ଦା ପାଞ୍ଚବର୍ଷ ହେଲା ଖୋଜୁଛି । ସ୍ତ୍ରୀ ମୋର ଶଯ୍ୟାଶାୟୀ; ତା'ର ଚିକିତ୍ସା କରିପାରୁନି ।ଏ ଲକ୍ଷେ ଟଙ୍କାରେ ମୋର ସବୁ ସମସ୍ୟା ଦୂର ହୋଇଯିବ । ନିଛାଟିଆ ଜଙ୍ଗଲ ଜାଗା । କେହି ଦେଖିବାକୁ

ନାହିଁ । ପୋଲିସ୍‌ର ଭୟ ନାହିଁ ବା ସମ୍ମାନହାନୀର ଆଶଙ୍କା ମଧ୍ୟ ନାହିଁ । ଏକଥା କେହି ଜାଣିପାରିବେ ନାହିଁ । ତେଣୁ ଏ ସୁଯୋଗ ହାତଛଡ଼ା କରିବା ବୋକାମି ହେବ ।

ଏମିତି ଅବସ୍ଥାରେ ବିଚାର କରାଯାଉ ଯେ, ପୃଥିବୀର କେଉଁ ଶକ୍ତି ମୃତ ବ୍ୟବସାୟୀର ବିଧବା ସ୍ତ୍ରୀ ଓ ଅନାଥ ପିଲାଙ୍କ ନ୍ୟାଯ୍ୟ ଅଧିକାର ସେମାନଙ୍କୁ ପ୍ରଦାନ କରିପାରିବ ? ସେ ଲକ୍ଷେଟଙ୍କା ତା' ପ୍ରକୃତ ଉତ୍ତରାଧିକାରୀଙ୍କୁ କିପରି ମିଳିବ ? କେଉଁ ବିଚାର ବା କେଉଁ ଚିନ୍ତାଧାରା ସେ ସହଯାତ୍ରୀର ମନ ପରିବର୍ତ୍ତନ କରିପାରିବ ? କେଉଁ ବିଶ୍ୱାସ ତା' ଅନ୍ତରାତ୍ମାକୁ ନ୍ୟାୟ କରିବା ପାଇଁ ବାଧ କରିପାରିବ ? ଏହା କେବଳ ଈଶ୍ୱରଙ୍କ ନିକଟରେ ଉତ୍ତରଦାୟିତ୍ୱବୋଧର ବିଶ୍ୱାସ ବ୍ୟତୀତ ଅନ୍ୟ କିଛି ନୁହେଁ । କେବଳ ଈଶ୍ୱରଙ୍କୁ ପ୍ରକୃତ ବିଶ୍ୱାସ କରୁଥିବା ଏବଂ ତାଙ୍କ ପ୍ରତି ଭୟ ରଖୁଥିବା ବ୍ୟକ୍ତି ହିଁ ଏହି ଦାୟିତ୍ୱ ତୁଲାଇ ପାରିବ ଏବଂ ଟଙ୍କା ତା' ଉତ୍ତରାଧିକାରୀଙ୍କୁ ହସ୍ତାନ୍ତର କରିପାରିବ । କାରଣ ସେ ଜାଣେ ଯେ, ଈଶ୍ୱର ସେଇ ନିର୍ଜନ ଜଙ୍ଗଲରେ ମଧ୍ୟ ତା' ସହିତ ଅଛନ୍ତି ଏବଂ ସେ କ'ଣ କରୁଛି, ତାହା ଦେଖୁଛନ୍ତି । ଯଦି ଅନ୍ୟାୟରେ ସେ ବିଧବା ଓ ଅନାଥଙ୍କର ନ୍ୟାଯ୍ୟ ଅଧିକାର ଛିନ୍ନ କରେ, ସେ ନିଶ୍ଚୟ ଅସନ୍ତୁଷ୍ଟ ହେବେ ଏବଂ ତାକୁ ଶାସ୍ତି ମଧ୍ୟ ଦେବେ । ଆଉ ଯଦି ସେ ନ୍ୟାୟ ପଥରୁ ବିଚ୍ୟୁତ ନ ହୁଏ, ତେବେ ସେ ତାକୁ ଅବଶ୍ୟ ଉଚିତ ପୁରସ୍କାର ପ୍ରଦାନ କରିବେ ।

ଏହି ସଦ୍‌ବିଶ୍ୱାସ ଏବଂ ସତ୍ ଚିନ୍ତାଧାରା ଏକାନ୍ତରେ ମଧ୍ୟ ମଣିଷକୁ ଧାର୍ମିକ ଓ ଶୃଙ୍ଖଳିତ କରି ରଖିପାରିବ । ଏମିତି ମଣିଷଟିଏ କିପରି ତା' ପରି ଅନ୍ୟ ମଣିଷର ପ୍ରାଣ ନେଇପାରିବ ବା ଆତ୍ମଘାତୀ ବିସ୍ଫୋରଣ କରିପାରିବ ? କିପରି ସେ ଜଣେ ମଣିଷର କିଡ୍‌ନୀ ଚୋରୀ କରିପାରିବ ବା ବିଷାକ୍ତ ମେହେନ୍ଦି ବିକିବାର ଧୃଷ୍ଟତା କରିପାରିବ ? କିପରି ସେ ଅନ୍ୟର କଷ୍ଟଲବ୍ଧ ଧନକୁ ଚୋରି ବା ଛଳକପଟ ଦ୍ୱାରା ନେଇଯାଇପାରିବ ? କିପରି ସେ ଅନ୍ୟର ମାନମହତ ସହ ଖେଳିବାକୁ ସାହସ କରିପାରିବ ?

ଅନ୍ୟ ପକ୍ଷରେ ଯିଏ ଏହା ବିଶ୍ୱାସ କରେ ଯେ, ଈଶ୍ୱର ବା ତାଙ୍କ ନୀତିନିୟମ ବୋଲି କିଛି ନାହିଁ, ସ୍ୱର୍ଗ ଓ ନର୍କ କୌଣସି କବିର ପରିକଳ୍ପନା ବା ପୁନର୍ଜୀବନ କୌଣସି ପାଗଳର ପ୍ରଳାପ, ସେଭଳି ବ୍ୟକ୍ତି ଅପରାଧ କରିବାକୁ କାହିଁକି ଭୟ କରିବ ? କିଏ ତାକୁ ଦୁର୍ନୀତି ଓ ଦୁରାଚାରରୁ କ୍ଷାନ୍ତ ରଖିପାରିବ ?

ପୁନର୍ଜୀବନ ସମସ୍ତ ଦିବ୍ୟଗ୍ରନ୍ଥରେ ସମାନ ଭାବରେ ରହିଥିବା ଏକ ମୌଳିକ ସିଦ୍ଧାନ୍ତ, ଯାହାର ପୁନଃସ୍ଥାପନା କୁର୍‌ଆନର ଉଦ୍ଦେଶ୍ୟ । ବିଭିନ୍ନ କାଳରେ ଧର୍ମଗ୍ରନ୍ଥମାନଙ୍କରେ ବ୍ୟାପକ ସଂଶୋଧନ ଓ ପରିବର୍ତ୍ତନ ଯୋଗୁଁ ଦିବ୍ୟସନ୍ଦେଶର ସ୍ୱରୂପ ବଦଳିଗଲା, ଯାହା ଫଳରେ ଗୋଟିଏ ସ୍ୱଚ୍ଛ ସରଳ ସିଦ୍ଧାନ୍ତରୁ ବିଭିନ୍ନ ମତବାଦ ସୃଷ୍ଟି ହୋଇଗଲା । କୁସଂସ୍କାର ଏତେ ପରିମାଣରେ ପ୍ରବେଶ କଲା ଯେ, ଏହା ପରଲୋକବାଦର ଉଦ୍ଦେଶ୍ୟକୁ ପଣ୍ଡ କରିଦେବା ସହିତ ମନୁଷ୍ୟ ମନରେ ଈଶ୍ୱରଙ୍କ ପ୍ରତି ଭୟ ଓ ଉତ୍ତରଦାୟିତ୍ୱର ଭାବନାକୁ ଦୁର୍ବଳ କରିଦେଲା । ଏହା ଏକ ସାଧାରଣ କଥା ଯେ, ଅବିଶ୍ୱାସ ବା ଦୁର୍ବଳ ବିଶ୍ୱାସ ସହ କର୍ମରେ ନିଷ୍ଠା ଓ ଦୃଢ଼ତା ଆସେ ନାହିଁ । ବିଶ୍ୱାସ ହିଁ କର୍ମର ଆଧାର ଏବଂ ସତ୍‌ବିଶ୍ୱାସ ଦ୍ୱାରା ସତ୍‌କର୍ମ ହୁଏ । ତେଣୁ ନିଜର ଅନ୍ତିମ ପ୍ରକାଶନ କୁର୍‌ଆନରେ କରୁଣାମୟ ସ୍ରଷ୍ଟା ମାନବ ହୃଦୟରେ ପୁନର୍ଜୀବନ ଓ ଉତ୍ତରଦାୟିତ୍ୱବୋଧର ବିଶ୍ୱାସକୁ ସୁଦୃଢ଼ କରିବା ପାଇଁ ବିଭିନ୍ନ ଶୈଳୀରେ ଉପଦେଶମାନ ଦେଇଛନ୍ତି, ଯେପରିକି ମନୁଷ୍ୟ ସଚେତନ ହେଉ ଏବଂ ତା'ର ଇହଲୋକ ଓ ପରଲୋକ ଉଭୟ ସଫଳ ହେଉ ।

କୁର୍‌ଆନ କୌଣସି ନୂତନ ଧର୍ମର ପ୍ରତିଷ୍ଠା ପାଇଁ ନୁହେଁ; ବରଂ ପୂର୍ବ ଦିବ୍ୟଧର୍ମର ସଂସ୍କାର ଓ ପୁନଃସ୍ଥାପନା ପାଇଁ ପ୍ରକାଶିତ ହୋଇଛି । ଏହା ବିଶୁଦ୍ଧ ଈଶ୍ୱରବାଣୀ, ଯାହାର ଗୋଟିଏ ଶବ୍ଦ ମଧ୍ୟ ମାନବ ରଚନା ନୁହେଁ । ଏହା ପୂର୍ବ ଦିବ୍ୟଗ୍ରନ୍ଥଗୁଡ଼ିକର ମୌଳିକ ଶିକ୍ଷାଗୁଡ଼ିକୁ ପରିବର୍ତ୍ତନ କରିନାହିଁ, ବରଂ ସେଗୁଡ଼ିକୁ ସଂଶୋଧନ କରିଛି । ଯେହେତୁ କୁର୍‌ଆନ ଅନ୍ତିମ ଦିବ୍ୟପ୍ରକାଶନ, ଏହାର ସୁରକ୍ଷା ପାଇଁ ସ୍ରଷ୍ଟା ଅଙ୍ଗୀକାରବଦ୍ଧ । ଏହା ଘୋଷଣା କରି ସେ କହିଛନ୍ତି :

> "ଆମ୍ଭେ ହିଁ ଏହି କୁର୍‌ଆନକୁ ଅବତୀର୍ଣ୍ଣ କରିଅଛୁ ଏବଂ ସ୍ୱୟଂ ଆମ୍ଭେ ହିଁ ଏହାର ସଂରକ୍ଷକ ।"

**କୁର୍‌ଆନ ୧୫ : ୯**

ଚଉଦଶହ ବର୍ଷ ହେଲା କୁର୍‌ଆନର ବିନ୍ଦୁବିସର୍ଗ ମଧ୍ୟ ପରିବର୍ତ୍ତନ ହୋଇନାହିଁ, କିମ୍ବା ଭବିଷ୍ୟତରେ ମାନବ ଦ୍ୱାରା ଏଥିରେ କୌଣସି ପ୍ରକାର ପରିବର୍ତ୍ତନ ବା ସଂଶୋଧନ ସମ୍ଭବ ନୁହେଁ । ତେଣୁ ଏହା ମନୁଷ୍ୟ [illegible] ହେବାରୁ ରକ୍ଷା କରିପାରିବ ।

ଜଣେ ପୁତ୍ର ଯେପରି ପିତାଙ୍କର ସମସ୍ତ ପତ୍ରଗୁଡ଼ିକୁ ବିଶ୍ୱାସ କରେ; କିନ୍ତୁ ସଦ୍ୟ ପ୍ରାପ୍ତ ପତ୍ରର ଆଦେଶର ପାଳନ କରିଥାଏ, ସେହିପରି ଜଣେ ମୁସଲମାନ ଭକ୍ତ ଈଶ୍ୱରଙ୍କର ସମସ୍ତ ଦିବ୍ୟଗ୍ରନ୍ଥଗୁଡ଼ିକୁ ବିଶ୍ୱାସ କରେ; କିନ୍ତୁ ଅନ୍ତିମ ଆଦେଶ ପାଳନ କରିଥାଏ । ଯେପରି ଜଣେ ସରକାରୀ କର୍ମଚାରୀ ତା' ଚାକିରି ଜୀବନରେ ସରକାରଙ୍କ ଦ୍ୱାରା ନିଯୁକ୍ତ ହୋଇଥିବା ସମସ୍ତ ପଦାଧିକାରୀଙ୍କୁ ଉଚିତ୍ ସମ୍ମାନ ପ୍ରଦର୍ଶନ କରେ; କିନ୍ତୁ କେବଳ ତତ୍କାଳୀନ ଅଧିକାରୀଙ୍କ ଆଦେଶ ପାଳନ କରିବା ନିଜ କର୍ତ୍ତବ୍ୟ ମନେକରେ, ସେହିପରି ଜଣେ ମୁସଲମାନ ଭକ୍ତ ଈଶ୍ୱରଙ୍କ ସମସ୍ତ ବାର୍ତ୍ତାବହଙ୍କର ସମ୍ମାନ କରେ; କିନ୍ତୁ ଅନ୍ତିମ ବାର୍ତ୍ତାବହ ମହାମାନ୍ୟ ମୁହମ୍ମଦଙ୍କ ଆଦେଶ ପାଳନ କରିବା ଯଥାର୍ଥ ମନେ କରେ ।

ଅବଶେଷରେ ମୁଁ ଏତିକି କହିବି ଯେ, ପୁନର୍ଜୀବନ ମୃତ୍ୟୁ ପରି ଏକ ଅଟଳ ସତ୍ୟ । ଯଦି ପ୍ରତ୍ୟେକ ବ୍ୟକ୍ତି ଏହି ସତ୍ୟକୁ ବିଶ୍ୱାସ କରି ଜୀବନ ନିର୍ବାହ କରେ, ତେବେ ତା' ଜୀବନ ସଫଳ ହେବ, ସମାଜ ଶୃଙ୍ଖଳିତ ହେବ ଏବଂ ଏ ଧରିତ୍ରୀ ସ୍ୱର୍ଗ ପାଲଟିଯିବ ।



## ନିର୍ବାଚିତ ପୁସ୍ତକ

୧. ପବିତ୍ର କୁର୍‌ଆନ : ଇଂରାଜୀ ଅନୁବାଦ–ଅବ୍‌ଦୁଲ୍ଲାହ୍ ୟୁସୁଫ ଅଲି

୨. ପବିତ୍ର ବାଇବଲ : ପ୍ରକାଶକ–ବାଇବଲ ସୋସାଇଟି ଅଫ୍ ଇଣ୍ଡିଆ
ମହାତ୍ମା ଗାନ୍ଧୀ ରୋଡ୍,
ବାଙ୍ଗାଲୋର - ୫୬୦ ୦୦୧

୩. ଋଗବେଦ : ଭାଷ୍ୟ–ମହର୍ଷି ଦୟାନନ୍ଦ ସରସ୍ୱତୀ
ଓଡ଼ିଆ ଅନୁବାଦ–ଶ୍ରୀ ମଧୁସୂଦନ ମହାନ୍ତି
ପ୍ରକାଶକ–ଧର୍ମଗ୍ରନ୍ଥ ଷ୍ଟୋର, କଟକ-୨

୪. ଯଜୁର୍ବେଦ : ଭାଷ୍ୟ–ମହର୍ଷି ଦୟାନନ୍ଦ ସରସ୍ୱତୀ
ଓଡ଼ିଆ ଅନୁବାଦ–ଶ୍ରୀ ମଧୁସୂଦନ ମହାନ୍ତି
ପ୍ରକାଶକ–ଧର୍ମଗ୍ରନ୍ଥ ଷ୍ଟୋର, କଟକ-୨

□□□

## ଲେଖକଙ୍କର ଅନ୍ୟାନ୍ୟ କୃତି ...










**IQRA RESEARCH ACADEMY**
**Metro Manzil, Dewan Bazar**
**Cuttack - 753 001**
**(Regn. No. - 1371/2009)**
**Cell : 9337054118 / 9861390837 / 9438303917**
**Website : www.iqraresearch.net**